# ସୂଚନା

ପୂଜ୍ୟପାଦ ସ୍ୱର୍ଗତ ପିତା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ରଚିତ କାବ୍ୟ, କବିତା, ନାଟକ, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ରାଜନୈତିକ ଲେଖା ଓ ଆତ୍ମଚରିତ ଗ୍ରନ୍ଥାବଳୀ ଆକାରରେ ସଂପାଦନା କରାଯାଉ-ଅଛି । ବସ୍ତୁତଃ ପିତା ଜୀବିତ ଥିବାବେଳେ ରାଜନୀତିର ନିଗଡ଼-ବେଷ୍ଟନୀ ମଧ୍ୟରେ ରହି ସୁଦ୍ଧା ଏ ଦିଗରେ କେତେଦୂର ଅଗ୍ରସର ହୋଇଥିଲେ । ସେ ନିଜର ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରି କେତେକ ଅଂଶ ପ୍ରକାଶନ ନିମିତ୍ତ ସଜ୍ଜିତ କରି ରଖିଥିଲେ । ଆକସ୍ମିକ ଭାବରେ ରୋଗାକ୍ରାନ୍ତ ହେବାରୁ ସଜ୍ଜିତ ଅଂଶର ପ୍ରକାଶନ ଘଟି ପାରି ନାହିଁ । ପୁଣି ପରେ ପରେ ତାଙ୍କର ମୃତ୍ୟୁ ଘଟିବାରୁ ପ୍ରକାଶନରେ ବହୁତ ବିଳମ୍ବ ଘଟିଅଛି । ଅନ୍ୟାନ୍ୟ ସମସ୍ତ ରଚନାକୁ ସେ ସଜ୍ଜିତ କରି ପାରିନାହାନ୍ତି । ସେଗୁଡ଼ିକର ସାଜସଜ୍ଜା ଓ ସଂକଳନ କାର୍ଯ୍ୟ ଚାଲିଛି । ତଥାପି ଖଣ୍ଡିଏ ଖଣ୍ଡିଏ କରି ସଂପାଦନା କରିବା ସଙ୍ଗେ ସଂପୂର୍ଣ୍ଣ ଗ୍ରନ୍ଥାବଳୀ ପ୍ରକାଶ କରିବା ସହଜସାଧ୍ୟ ମନେହେଉଛି । ସେହି ଦୃଷ୍ଟିରୁ ଏହି 'ଗୀତଗୁଚ୍ଛ' ଗ୍ରନ୍ଥାବଳୀ ସଂକଳନ ଦିଗରେ ପ୍ରଥମ ଉଦ୍ୟମ ।

ବିନୀତ
ସଂକଳକ

# ସୂଚିପତ୍ର

# ଜନ୍ମଭୂମି

ଜନମଭୂମି ଯେ ମାଟି ପଥରର
ଜନନୀଙ୍କ ବଳ ବଢ଼ି;
ସେ ଜନମଭୂମି ସେବା ଯେ କରଇ
ନରଜନ୍ମ ଧନ୍ୟ ତାର ।

ହ୍ରଦ ଝର୍ଣ୍ଣା ବନ ପ୍ରାନ୍ତର ପର୍ବତ—
ଜଡ଼ ଏ ସକଳ ଯେତେ,
ପ୍ରତି ସ୍ଥାଣେ ବହେ ଜନନୀ ରକତ
ଜୀବନ୍ତ ପରଶେ ସତେ ।

ସରଗୁଁ ବଳି ଏ ଜନମଭୂମିର
ହେଲେ ତିଳିକ ଅପମାନ,
ଥିଲା ଦିନ ଯେବେ ଉଠୁଥିଲେ ଗର୍ଜି
କୋଟି କୋଟି ତା ସନ୍ତାନ ।

ଏ ଜନମଭୂମି ଗଉରବ ଶିରୀ
ଅଟଳ ରଖିବା ପାଇଁ,
ସମର ପ୍ରାଙ୍ଗଣେ ଦେଇଥିଲେ ପ୍ରାଣ
ଶତ ଲକ୍ଷ ଦେଶ ଭାଇ ।

ଅଛୁ ସେହି ଭୂଇଁ, କେଜାଣେ କପାଇଁ
ହୃଦୟେ ନାହିଁ ସେ ଟାଣ,
ଜନମି ଦଇନେ କପଟ ସନ୍ତାନେ
ରହିଛନ୍ତି ଧରି ପ୍ରାଣ ।

କି ସୁଖ ଜୀବନେ, ଚିର ଅପମାନ
ହେବ ଯେବେ ଭାଗ୍ୟେ ଲେଖା ?
ମାଆ ବୋଲି ଥରେ ଉଠ, ହେ ସୋଦରେ,
ମାଆର ଲଭିବ ଦେଖା ।



# ରାଜାଙ୍କ ମାଂସ ଦାନ

କେତେ ଶତ ବର୍ଷ ପୂର୍ବେ ଏ ପୁଣ୍ୟ ଭାରତେ,
ଯଦୁପତି ଉଶୀନର ପ୍ରଖ୍ୟାତ ଜଗତେ ।
ଧରି ରାଜଦଣ୍ଡ କରେ କରନ୍ତି ଶାସନ,
ବହି ସ୍ନେହ ପ୍ରଜାଗଣେ ପୁତ୍ର କନ୍ୟା ସମ ।
ନ୍ୟାୟେ ସ୍ୱୟଂ ବୃହସ୍ପତି ନୃପ ଶିରୋମଣି,
ଦୟାର ସାକ୍ଷାତ ମୂର୍ତ୍ତି, ଗୌରବେ ଅଶନ ।

ଧର୍ମରକ୍ଷା ଲାଗି ଥରେ ଉଶୀନର ରାଜ୍ୟ,
ଅମାତ୍ୟ ଅମଲା ସହ ଲିପ୍ତ ରାଜକାର୍ଯ୍ୟ;
ଆସିଲା ସହସା ଶୂନ୍ୟ କପୋତ ସେକାଳେ,
କହିଲା, "ଶ୍ରୀପଦେ ଦିଅ ଶରଣ ଏ ଥରେ;
ପଛେ ଗୋଡ଼ାଇଛି ଶ୍ୟେନ, ଆସିବ ଏକ୍ଷଣି,
ମାରି ପ୍ରାଣେ ହତଭାଗ୍ୟେ ଖାଇବ, ନୃମଣି ।"

ନସରୁଁ ମୁଖୁ ତା କଥା, ଆସିଲା ସଞ୍ଚାଣ;
କହିଲା, "ମୋ ଖାଦ୍ୟ ମୋତେ ଦିଅ ନରରାଣ !
କରେ ମୁହିଁ ପକ୍ଷୀ ରାଜ୍ୟ ରାଜତ୍ୱ ଗଗନେ,
ଯେତେବେ ଯାକୁ ପାଏ, ଖାଏ ବୁଭୁକ୍ଷା ମେଣ୍ଟନେ ।
ହସ୍ତକ୍ଷେପ ମୋ' ଶାସନେ ନକର, ରାଜନ;
ଛାଡ଼ିଦିଅ କପୋତକୁ, ଥାଏ ମୁଁ ବଦନ ।"

ଶୁଣି ଶ୍ୟେନ ଯୁକ୍ତି, ସିନା ହୋଇଲେ କାତର,
ତେଜି କି ଆଶ୍ରିତେ ଦେବେ ନୃପ ଉଶୀନର ?
କହିଲେ, "ସଞ୍ଚାଣ, କ୍ଷୁଧା ମେଣ୍ଟାଇବ ସିନା;
କ୍ଷୁଧାଗ୍ନି କି ନ ଲିଭିବ ଏ କପୋତ ବିନା ?
ପ୍ରଚୁର ମାଂସ ମୁଁ ତୁମ୍ଭ ଦେଉଅଛି ଆଣି,
ବଞ୍ଚାଅ ଆଜ ହେ ପ୍ରାଣେ ଏ ନିରୀହ ପ୍ରାଣୀ ।"

ଶୁଣି ତା ସଞ୍ଚାଣ ବେଗେ କହେ ଯୁକ୍ତି ଛଳେ,
"ଦୟାବନ୍ତ ବାନା କାହିଁ ଉଡ଼ାଅ ଭୂତଳେ ?
ଏକ ଜୀବେ ବଞ୍ଚାଇବ, ଅନ୍ୟ ଜୀବ ମାରି;
କି ପୁଣ୍ୟ ଅର୍ଜିବ ବୋଲ ଏ କପୋତ ତାରି ?
କହୁଛ ରାଜସ ଗୁଣ, ରାଜନ ଅନ୍ତରେ;
ତହୁଁ ଯାଚ ଆନ ମାଂସ କପୋତ ବଦଳେ ।"

ରାଜସୁଁ ସାତ୍ତ୍ୱିକ ଗୁଣେ ବଡ଼ ଯଦୁପତି,
କହିଲେ, "ସଞ୍ଚାଣ, ଆଜ ନୁହଁ ରୁଷ୍ଟମତି ।
ମାପି ତୁଳାଯନ୍ତ୍ରେ ଦେବି ମୋ ଦେହୁ ପିଶିତ,
କପୋତର ଓଜନସ୍ତେ ନେଅ, ବୁଭୁକ୍ଷିତ !
ତଉଲେ ଓଜନ ଯେତେ, ଦେବି ମୁହିଁ ତୁଳି
ଅଣାଉଛି ତୁଳାଯନ୍ତ୍ର, ସୁଶାଣିତ ଛୁରୀ ।"

ତୁଳାଦଣ୍ଡ ଏକପାର୍ଶ୍ୱେ କପୋତେ ବସାଇ,
ନିଜ ଦେହୁ ମାଂସ ଖଣ୍ଡ କାଟି ନିରସାଇ,
ଥାପି ଅନ୍ୟପାର୍ଶ୍ୱେ ତାକୁ, ଧରନ୍ତେ ସେ ଦଣ୍ଡ,
ହୋଇଲା କପୋତ ଭାରି, ଲଘୁ ମାଂସ ଖଣ୍ଡ ।

କାଟିଲେ ନୃପତି ଉରୁ ଆଉ ଖଣ୍ଡେ ମାଂସ,
ରକ୍ତନଦୀ ବହେସିନା, ଘୋର ଅନ୍ୟପାର୍ଶ୍ୱ ।

ପଡ଼ିଗଲା ରାଜସଭା ମଧ୍ୟେ ହାହାକାର,
ନଶୁଣିଲେ ନୃପ କିଛି, ନକଲେ ବିଚାର;
ତୁଳାପାତ୍ରେ ବସିଗଲେ ସ୍ୱମାଂସ ସହିତ,
କ୍ଷୁଧାର୍ତ୍ତ ସଞ୍ଚାଣ ଦେଖି ଅତି ଆଚମ୍ବିତ ।
ଜୀବନରେ କରିବାକୁ ପ୍ରତ୍ୟକ୍ଷେ ପରୀକ୍ଷା,
ଇନ୍ଦ୍ର, ଅଗ୍ନି ବହିଥିଲେ ଏହି କୂଟ ଦୀକ୍ଷା ।

ସେ ପରୀକ୍ଷା କ୍ଷେତ୍ରେ ଇନ୍ଦ୍ର ହେଲେ ପରାଭୂତ,
ଲଭିଲେ ରାଜନ୍ୟ ଠକେ ସଦୁକୂଳ ସୂତ ।
ରାଜସଭା ଶିରେ ଇନ୍ଦ୍ର କରି ପୁଷ୍ପବୃଷ୍ଟି,
କହିଲେ, "ରାଜନ, ଆଜ ଧନ୍ୟ ହେଲା ସୃଷ୍ଟି ।
ଜୀବେ ଏତେ ଦୟା ଅହା ବହିଛ ହୃଦୟେ !
ଶରଣାଗ ରଖିଅଛ ନିଜ ଜୀବନମୟେ ।"



# ଗୋପାଳ

ଘରକୁ ଗୋପାଳ ଏକମାତ୍ର ପୁଅ
ଦରିଦ୍ରପରିବା ଅଚଳଲଢ଼ି,
ଦୁଇଧନେ ଥରେ ଛୁଏଁ ଅନ୍ନ ମୁଖେ
ବାକି ବେଳେ ଖାଏ ଛୁଡ଼ୁମ୍ବ ମୁଢ଼ି ।

ଘରେ ଆସି ଶାନ୍ତି ଠାଏ ବସିବାକୁ
ଫୁରୁସତ ନାନା ଜଞ୍ଜାଳେ କାହିଁ ?
ବିଭା-ବ୍ରତ-ଶ୍ରାଦ୍ଧ- କୋଠ ଜଲ୍ଲାଳେ ସେ
ନ ରହିଲେ କାମ ଉଠଇ ନାହିଁ ।

କାହା ଘରେ ରୋଗୀ ପଡିଥିଲେ ଶେଯେ,
ତା ସନେ କେ ସେବା କରିବ ଆଉ ?
ଦୋକାନୁ ସଉଦା ନ ଆସିଲେ କା'ର,
ଗୋପାଳ ତକ୍ଷଣେ ଜୁଟଇ କାହିଁ ।

ଜା ଗଛୁଁ ନଡ଼ିଆ ତୋଳା ନେଉଥିଲେ,
ଚଢ଼େ ବିନା ଛନ୍ଦେ ଗଛେ ଗୋପାଳ;

କା ଗାଈ ଘରକୁ          ଚରି ନ ଫେରିଲେ;
ତାର ବନ୍ଧୁଯାଏ ଦେଉଡ଼ପା ଝୁଲ ।

କେ ଯଦି ମୁଣ୍ଡାଇ          ବୋଝ ବୋହିବାକୁ
ବୁଲି ଖୋଜ ଗ୍ରାମେ ନ ପାଏ ଲୋକ,
ଭଡ଼ ଭରା ଅଣ୍ଟା          ବାହାରେ ଗୋପାଳ,
ମନେ ତା ନ ପଡ଼େ ଶୋଷ କି ଭୋକ ।

କ୍ଷୁଧାର୍ତ୍ତ ବୁଲନ୍ତେ          ମାଗି ଗାଆଁ ଦାଣ୍ଡେ,
ଧନୀ ସିନା ମୁହଁ ଫେରାନ୍ତି ମୋଡ଼ି,
ଘରୁ ଚୂଡ଼ା ମୁଢ଼ି          ଯା ପାଏ ହାଜିଁଟି
ଦିଏ ଆଣି ସେତୁ ତା ହାତେ ଲୋଡ଼ି ।

ଗ୍ରାମେ ଯେବେ ଆସେ          ଗୁଡ଼ିଆ ପସରା,
ମୁଆଁ ପାଇଁ କରେ ହଠ କା ପିଲା,
ଉଧାରେ ପଇସା          ଆଣି ସେ ଗୋପାଳ,
କିଣି ମୁଆଁ ତାକୁ କରଇ ଖୁସି ।

ହଣା ମରା କାହିଁ          ଲଗିଲେ, ଧାଏଁ ସେ,
ଦୁଇଦଳ ମଧ୍ୟେ ହୁଅଇ ଠିଆ;
ତା ମୁଣ୍ଡେ ପାହାର          ବସେ ଦୁଇପଖୁଁ
ମାତ୍ର ନିଭିଯାଏ କଳହ ନିଆଁ ।

କେହୁ ଯଦି କରି          ଦୋଷ ଅପରାଧ
ଛଡ଼ା ହୁଏ ଦଣ୍ଡ ଭୋଗିବା ପାଇଁ,
ଠେଲିପଡ଼ ଆଗେ          କହଇ ଗୋପାଳ,
"ମୁଁ ଦୋଷ କରିଛି; ସେ କରିନାହିଁ ।"

ଘରେ କାର ନିଆଁ ଲଗନ୍ତେ, ପ୍ରଥମେ
ବୁଜ ଆଖି ସେଥୁ ଚଢ଼ଇ ଗୁଳେ;
ହାତ ମୁଦଁ ଟୋଡ଼ ଶୁଏ ଶେଯେ ପିନା,
ଚଗୁଏ ନାହିଁ ସେ ଆପଦକାଳେ ।

ଘରେ ବାପା ମାଆ କାନ୍ଦ ଗଡ଼ୁଥାନ୍ତି,
ହାତକୁ ନୋହିଲା ଢହାଚ ଖେଥୁ,
ଚଜିତ ବରଷୁଂ ଗୁଳଶ ପାଖାଏ;
ବଳ ହମେ ଖସି ଅସିଲ ଦେହୁଁ ।

ପର ମନ୍ଦ ଚିନ୍ତା କିସ ସେ ନ ଜାଣେ,
ପର ଛିଦ୍ର ତୁଣ୍ଡେ ନ ଧରେ ଦିନେ,
ତା ସାର ଜୀବନେ ଶ୍ରେଷ୍ଠ ବଡ଼ କାମ
କରେ ନାହିଁ ପର କଲ୍ୟାଣ ବିନେ ।

ଶେଷେ ଯେବେ ମଲୁ ଗୁଳିଲା ଗୋପାଳ,
ଗ୍ରାମସାର ଆଜ ନୋହିଲା ଗୁହିଁ,
'ଆହା ଆହା' ଭଣ୍ଡି ନ ସରେ କାହାର,
ଲୁହ କା ନୟନ ଶୁଟଇ ନାହିଁ ।



# ମହେନ୍ଦ୍ର ତନୟା

ଉତ୍କଳ ମଣ୍ଡଳେ        ମହେନ୍ଦ୍ର ପର୍ବତ
ସକଳ ପର୍ବତୁଁ ବଡ଼,
ଏପାଖେ ରହିଛି        ପାଘଲା ସଇଳ
ସେପାଖେ ମଞ୍ଜୁଷା ଗଡ଼ ।
ଭେଦୁଛି ଆକାଶ—        ଶିଖ ତାର, ତହିଁ
ଗଲେ ମନେ ଲାଗେ ଭୟ;
ଲକ୍ଷ ପର୍ବତ        ମଧ୍ୟେ ସେତ ଏକା
ଉତ୍କଳର ହିମାଳୟ ।
ଶାସ୍ତ୍ରେ ପଗ ଅଛି,        ଶିବ ଶିରୁ ମର୍ତ୍ତ୍ୟେ
ଯାହ୍ନବୀ ଯାଉଛି ବହି;
ତେମନେ ବହଇ        ମହେନ୍ଦ୍ର ଶିଖରୁ
ମହେନ୍ଦ୍ର ତନୟା ନଈ ।
ଗଛଲତା ଧାସ୍ର        ଢଶେ କ ଶ୍ୟାମଳ
ସେ ମହେନ୍ଦ୍ର ପରବତେ,
ତା ନଦେହ ମହେନ୍ଦ୍ର-        ତନୟା ଧାଉଛି
ରୂପା ଉତ୍ତରୀ କ ପରେ !
କଳ ଗୀତେ ସୁଖେ        ବହଇ ଝରଣା
ପଥରୁ ପଥରେ ଡେଇଁ,
ଶୁଣିତା ତଳକେ        କାନନ କୁରଙ୍ଗେ
ନାତରୁ ଉଠନ୍ତି ତେଇଁ ।

କାହିଁ ଜମି ପାଣି    ଖେଳଇ ଉର୍ମିଷ,
ଲଙ୍ଘେ ଶିଳା ବାଡ଼ କାହିଁ;
କାହିଁ ତରତରେ    ଚଢ଼େ ଗୁଳ୍ମଯାଏ,
ମୃଦୁରେ ଉହଇ କାହିଁ ।
ଅଉ କାହିଁ ପୁଣି    ଖସି ବେଗେ ଚଂଳେ
ଉଠଇ ପ୍ରପାତ ଗୋଟି,
ତର୍ଦ୍ଧ ବନ୍ଧୁ ପୁଣି,    ଚନ୍ଦ୍ରଲତା ମୂଳେ
ଯାଏ କଳକଳେ ଲୋଟି ।
ଯାଇ ଯେବେ ଶେଷେ    ଗିରି ପାଦଦେଶେ
ମିଳଇ ଚନ୍ଦ୍ରିମା ପୁଣି,
ଧୀରେ ବନ୍ଧୁ ଯୁଟିଲେ    କଳ ଗୀତ ସାରେ,
ଭୁବନେ ହୁଅଇ ଲୀନ ।
ଶିଶୁ ସମ ସାନ    ମହେନ୍ଦ୍ର ତନୟା
କେତେ ବଡ଼ ହୁଏ ବଢ଼ି,
ଏ କୂଳୁ ସେ କୂଳ    ପାଏ କାହିଁ ଆଖି,
ବଡ଼ମା ବୁହଇ ଜଳ ।
ତା ଦେହ ଚଞ୍ଚନ୍ତି    ସାରା ରାଜ୍ୟ ଜନ
ପିଅନ୍ତି ଅମୃତ ତାତ,
କେତେ ଶସ୍ୟ ହିତ    ନ ସାଧି ପାରଇ
ପବଚର ବର୍ଷା ଧାର !
ଶୁଭେଲୁ ଯାଉଛି    ବନ୍ଧୁ ସେ ଋଦେଶେ
ଯରେ ଋତରୁଛି ଦୟା,
ଭୁନା ଗୁଣ ବେନ    ସମ୍ପଦେ ଭୂତଳେ
ବଡ଼ ମହେନ୍ଦ୍ର ତନୟା ।

# ସାୟାହ୍ନ ଭାବନା

ଲୁଚିଲା ତପନ ଯାଇ ଅସ୍ତାଚଳ ଶିରେ,
ଆସଇ ପସରୀ ଦିଗୁଁ ମାଡ଼ି ତମ ଧୀରେ ।
ପ୍ରତୀଚୀ ଗଗନ ପଟ ଦିଶଇ ପାଟଳ ,
ଦିବସର ଶେଷ ଶିଖା ସେ ତ ସେ ଦିନର ।

ସାରି ଦଲେ ହଳକାମ, ବେଗେ ଚଷା ଭାଇ
ଫେରଇ ହର୍ଷରେ ଏବେ ସୁରେ ଗୀତ ଗାଇ ।
ଘରେ ବାଟୁ ପାଛୋଟି ମା ନେବେଟି ଆଦରେ,
ବାଢ଼ି ଶାଗ ଜାଉ ସ୍ନେହେ ଖୋଇବେ କୁମରେ ।

ହମ୍ବାରବେ ଗୋରୁ ଯେଠ ଯାଆନ୍ତି ଲେଉଟି,
ବେକ-ଘଣ୍ଟି ସ୍ୱନ ନଭେ ଯାଉଅଛି ଉଠି ।
ବନସାରା ବନ୍ଧାଛନ୍ତି ଗୁହାଳେ ବାଛୁରି,
ଗଲେ ପିଆଇବେ ସ୍ତନ ଦୁଅନ୍ତୁ କାଇଁଲା ।

କାଆ ଘନ ରଙ୍ଗେ କୁଆ ଚଲ୍ ଚଲ ଝଣ୍ଡ,
ବ୍ୟୋମ ବକ୍ଷେ ମାଂଡ ପାଂଜଅନନ୍ତ ବାହୁଡ଼ ।

ବହଇ ଚଟିଗାଗଣୀ କଳ କଳ ଭାଷେ,
କହଇ, "ପିଉ ମୁଁ ଉଭ୍ୱ ପାରାବାର ପାଶେ ।
ଛବସଡାକ ମୁଁ ଡାକୁ ବନ୍ଧିଥିଲି ବୁକେ,
କି ଦୂର ଗଇଲେ ସେ ତ ଭୁଲିଗଲା ସୁଖେ ।
ସେତେବେଳେ ପୁଣି ସେହୁ ଲେଉଟିବ ନାହିଁ,
ଏ ପ୍ରାଣେ କି କାର୍ଯ୍ୟ ମୋର; ବଞ୍ଚିବ କାହାଇଁ ?
ଅନ୍ଧାରେ ରହିବ ରୂପ ଲୁଚିଇ ଉଦାସେ,
ଖରଫୁଲେ ନ ରୋଡିବ ମୋ ଲଳିତ ଭାଷେ ।"

ସେଦିନଳି ପଗଣେ ସବୁ ବସି ମୁଁ କାନ୍ତାରେ,
ଅନ୍ଧାର ଡୋଇଲା ନଶି ଛଳ ପଦାମାନେ ॥
କମଳ କଳିକା ଦେଲା ମୁଦ୍ଧ ନେତ୍ର ହମେ,
ଗୁଞ୍ଜି ଗୀତ ମଦ୍ଧମାତ୍ରି ଗାଇଲେ ସମ୍ଭ୍ରମେ ।

ବସିଥିଲି ଏକା ମୁହିଁ ଆସି ନଦୀତଟେ,
ସ୍ୱାଗ ସାଙ୍ଗ ଜଣେ ତିଳ ମୋ ନଥିଲେ ସ୍ୱଗତେ ।
ରେଟେଜ, ମୁହିଁ ନିର୍ଜନତା ନଥିଲି ତ ଜାଣି;
ସାଥି ଥିଲେ ଯେତେ ଧବ-ନଭ-ନୀର ପ୍ରାଣୀ ।
ସରବେ ଏବେ ସେ ଗଲେ ପଳାଇ ସାପ୍ନାହ୍ନେ,
ରେଜ ମୋତେ ଏକାକିଟି ଆକୁଳ ପବଣେ;
ବିଜନେ ଏକା ମୁଁ ଆହା ନବଣ ଅନ୍ତରେ,
ଏ ଘୋର ବନସ୍ତ ଦେଶେଁ ବସିଛୁ କାତରେ ।

ଯିବ ଏବେ ଘରେ, କାଲି ଲେଉଟିବା ପାଇଁ,
ଝବାଣିଶ୍ୱ ଚେତେକ ପୁଣି ଦେଖିବ ଅନାଇ ।
ଜ ଏଚଷ ଦୃଷ୍ଟି ଏନ୍ଧ କରିଛୁ ଭୁଆଁକ,
କ୍ଷଣେ ଯେ, ଯେ ରୂପ ଧରେ ପର କ୍ଷଣେ ଆନ ।
ପଲକେ ଯେ ନୃପ ଥାଏ ପଲକେ ଭିକାରୀ,
ଆଜ ଯେ ସୁନ୍ଦର ଅତି, କୁତ୍ସିତ ସେ କାଲି

ଏ ଏକା ପ୍ରକୃତି ରୂପ ଅଟେ ଜଗତର,
ସୁଖଦୁଃଖ, ଭଲମନ୍ଦ ସମାନ ସକଳ ।
ସୁଖ ଅଛି, ତହୁଁ ଦୁଃଖ ରହିଛି ତା ପାଶେ,
ସମ୍ଭବ ପାରଇ ଭଲ ମନ୍ଦର ସକାଶେ ।
ଖାଲି ଭଲେ, ଖାଲି ସୁଖେ ଅସମ୍ଭବ ମହୀ,
ଦୁଃଖ ମୂଳାଧାରେ ଦିନା ପାରେ ସୁଖ ରହି ।

ଆସ ସଖି, ଅନ୍ଧକାରେ ଡାଙ୍କିବ ପ୍ର ମୋତେ,
ତେବେ ମୁଁ ଲଭିବ ଏବା କାଳ ମହାସ୍ରୋତେ ।



# କବି

ଜଗତେ ଅତୁଳ୍ୟ ବୋଲାଅ, କବି ହେ,
ଏ ଅମର ମେଳାପେ ବଡ଼,
ଥାପି ମର୍ତ୍ତ୍ୟେ ଏକ ମୟୂର, ସ୍ୱରଗେ
ବତାଇ ପାର ଅପର ।
ଦର୍ଶନ ବିଜ୍ଞାନ ଜ୍ୟୋତିଷ ଗଣିତ
ରସାୟନ, ଇତିହାସ,
କି ଅଛି ଭୂତଳେ ବିଦ୍ୟା ଏଭଳି ହେ,
ତୁମେ ନ କରିଛ ବଶ ?
ସକଳ ବିଷୟେ ଚଳି ପାର ତବ
ଦୁର୍ଜୟ ଲେଖନୀ ହେଲେ,
ବୁଢ଼ ହେବ ନହି ଅମର ଅଭେଦ୍ୟ
ସୁଚିତ୍ରର ପାରିବାରେ ।
ହସାଅ, କନ୍ଦାଅ ଯେତେବେଳେ ଯାହା
ଇଚ୍ଛାର ଆପଣା ମନେ,
କି ହସ୍ତା କୁହୁକେ ରଖିଛ ଆବରି
ଜଗତ ଯାବତ ଜନେ !

ଛାୟାରେ ଦେଖୁଛ    କାୟା ଆଣି କାହୁଁ ?
କାୟାରେ କରୁଛ ଛାୟା,
ମୋହ ବିଜଡ଼ିତ    ମର ନର ପ୍ରାଣୁ
ଭୁଲାଅ ମୋହନ ମାୟା ।
ଭିକାରିରେ ଥାପ    ରାଜ ସିଂହାସନେ,
ରାଜନେ କର ଭିକାରି,
ମରୁ ଦେଶେ ରଚ    ନନ୍ଦନ କାନନ
ନନ୍ଦନେ ପାରତ ଜାଳ ।
ଜାଣି ମିଛ ବୋଲି    ଭୁଲନ୍ତି ମାନବେ
ଏ କି ମସ୍କରିକା ତୁମେ ?
ମିଛେ ଏ ମରତେ    କରୁଛ ରାଜୁତି
ବଶୁ ଆଦରଣ ତୁମେ ।
ମୁଁ ହେଲେ ନଉନ    ଧନ ଅକଞ୍ଚନ
ଏ ମହା ସଂସାର ଦେଶେ,
ତୁମ ବିମୋହନେ    ନ ଭୁଲି, କହ ହେ,
ରହିବ ମୋ ସ୍ଥାନ କେଶେ ।

# ମାୟାମୃଗ

ପର୍ଣ୍ଣକୁଟୀ ମଧ୍ୟେ ଅଯୋଧ୍ୟା ନରେଶ
ଦୂର ପଞ୍ଚବଟୀ ବନେ,
ବସି, ହର୍ଷେ ସୀତା ଲକ୍ଷ୍ମଣ ସଙ୍ଗତେ
ରତ ପ୍ରୀତ ଆଳାପନେ ।
ଆସି ଉଭ କାହୁଁ ଧାଇଁ ସ୍ୱର୍ଣ୍ଣ ମୃଗ
କୁଟୀର ଦୁଆର ପାଶେ,
ଚଞ୍ଚଳ ଚଟକ ପ୍ରାୟେ ନିମିଷକେ
ଲୁଚିଗଲା ବନବାସେ ।

ଦେଖି, ତା ମୂରତି ନ ପାରିଲେ ପୋଷି
ଜନକ ରାଜ ଦୁହିତା,
କହିଲେ, "ସେ ନିଧି ନ ଆଣିଲେ ଧରି
ଅନ୍ନ ମୋତେ ହେବ ପିତା ।"
ଶୁଣି ରାମ ବେଗେ ଧନୁଶର ହାତେ
କୁଟୀରୁ ହେଲେ ବାହାର,
ବୁଲି ବନେ ମୃଗେ କେତେ ତ ଖୋଜିଲେ
ଛୁଇ ନ ଦେଖିଲେ ତାର ।

ବନୁ ବନେ, ଗିରୁ— ସଙ୍କଟ ଗିରକ
ଗ୍ଭଲନ୍ତ ଅଯୋଧ୍ୟା ସାଇଁ,
ଛେଣେ, ସୀତାସହ ଉଦ୍‌ବଗ୍ନ ଲକ୍ଷ୍ମଣ
ବାଟ ଉତ୍ସଚ୍ଛନ୍ତ ଗ୍ଭହିଁ ।

କେତେବେଳେ ବନୁଁ ଆସିଲ୍‌ ଶବଦ
"ଲକ୍ଷ୍ମଣ, ରଖ ଜୀବନ,"
ଶୁଣି କାନେ ସୀତା ପଡ଼ିଲେ ଚମକ
ଅଧୀର ହେଲେ ଲକ୍ଷ୍ମଣ ।
କହିଲେ ସୀତା, "ଏ ଭାଇ କଣ୍ଠ ସ୍ୱର
ଆପଦେ ପଡ଼ିଲେ କାହିଁ,
ଯାଅ ଏ ମୁହୂର୍ତ୍ତେ, ହେ ଲକ୍ଷ୍ମଣ, ତହିଁ
ଭାଇଙ୍କି ତାରିବା ପାଇଁ ।"
ମନ ନ ମାନିଲ୍‌, ତଥାପି ସୌମିତ୍ରି
ଗ୍ଭଲିଲେ କୁଟୀର ତେଜି,
ଘୋର ବନେ ସୀତା ରହିଲେ ଏକାକି,
ଶତ୍ରେ ରାମ ନାମ ବେଜି ।

ଗ୍ଭହୁଁ ଗ୍ଭହୁଁ ଦ୍ୱାରେ ଆଗତ ଭିକ୍ଷାର୍ଥୀ
ମାଗଇ ଭିକ ଆତୁରେ,
ପତିବ୍ରତା ପତି— କଲ୍ୟାଣ ମନାସି
ଭିକ୍ଷାନ୍ନ ବାଢ଼ିଲେ ଦୂରେ ।
କହିଲ୍ ଭିକ୍ଷାରୀ, "କରେ ଆଣି ଦେଲେ,
ଘେନିବି ସିନା ମୁଁ ଭିକ,

ପରବାସେ ପାଦ             ପକାଇବ, ମୋତେ
ମଣ କ ଏଡ଼େ ନାସ୍ତିକ ?"

ଶଙ୍କେ ଭିକ୍ଷାନ୍ନ             ଆଣି, ଦ୍ୱାରଦେଶୁ
ବଢ଼ାଇ ଦେଲେ ମୈଥିଳୀ,
କ ହେଲା ! ଭିକ୍ଷାର୍ଥୀ             ପ୍ରକାଶି ସ୍ୱରୂପ
ଧଇଲା ଶ୍ରୀକର ଭିଡ଼ି ।
ଦଶମୁଣ୍ଡ ତାର             ବେକ ଉପରକୁ
ବକ୍ରଟ ବଶଇ ଅନ୍ତ,
ଝୁଲଇ କୋଡ଼ିଏ             ହାତ ବେକ ପାଶେ,
ଦେଖି, ମୂର୍ଚ୍ଛା ଗଲେ ସତୀ ।

ପୁଷ୍ପକ ରଥ ତା             ଥିଲା ପାଶେ, ତାଙ୍କୁ
ବଳେ ସେ ଥାପିଲା ତହିଁ,
ଭୟେ ଖିନ୍ନ ହସ୍ତା             ଜାନକୀ ବଡ଼କେ
କାନ୍ଦୁଛନ୍ତି କଇଁ କଇଁ ।
କାହୁଡ଼ ଶ୍ରୀରାମ—             ସୌମିତ୍ରି କୁଟୀରେ
ହୋଇଲେ ଚକତ ଅନ୍ତ,
ତେଣେ, ଉଡ଼େ ରଥେ             ସୀତାଙ୍କୁ ବସାଇ
ସେ ଦୈତ୍ୟ ଲଙ୍କା ନୃପତି ।
ସ୍ୱର୍ଣ୍ଣମୃଗ ରୂପେ             ମାୟାମୃଗ ଗୋଟି
ହୋଇଥିଲା ଯେ ରାବଣ,
ସେହି ମାୟା ବଳେ             ହରିଲା ସୀତାଙ୍କୁ,
ବୁଝିଲେ ରାମଲକ୍ଷ୍ମଣ ।



# ସଲିଳଧାର *

"ଢାଳିଦିଅ, ଆଗୋ ନାରି, ଢାଳିଦିଅ ଜଳ,
ପିପାସାରେ ହୋଇଛି ମୁଁ ଭୃଶେ କାତର ।
ଭ୍ରମି ବହୁ ପନ୍ଥା ବନ ପଦା ପରବତେ,
ବଞ୍ଚିବ ମଣିବ କିବା ଲୁହାଇ ପରତେ ।
ଯହିଁ ତହିଁ ବୁଲି ପାଣି ଖୋଜିଲି ବହୁତ,
ନଈ, ନାଳ କାହିଁ ମୋର ହେଲାନାହିଁ ଭେଟ ।
ଯହିଁ ଆଶା କରିଗଲି ପାଇବି ମୁଁ ବୋଲି,
ତହୁଁ ତହୁଁ ନିରାଶାରେ ଆସିଛି ବାହୁଡ଼ି ।
ଢାଳିଦିଅ ଏବେ, ନାରି, ଢାଳିଦିଅ ଜଳ,
ପିପାସାରେ ହୋଇଛି ମୁଁ ନିତାନ୍ତ କାତର ।"

ପାଣିର ମିଷ୍ଟତା ଜିଣି ସୁମଧୁରେ ଢାଳି,
ମୃଦୁ କଣ୍ଠ ଘୋଷେ ତହୁଁ ଉତ୍ତରିଲା ନାରୀ—

---

* କବି ଥରେ ୧୯୧୪ ମସିହା ଗ୍ରୀଷ୍ମଅବକାଶରେ ସତ୍ୟବାଦୀ ବିଦ୍ୟାଳୟ ନିମନ୍ତେ ଘରତୋଳା କାଠ ଆଣିବାକୁ ମୟୂରଭଞ୍ଜ ଯାଇଥିଲେ । ସେତେବେଳେ ତାଙ୍କୁ କାଠ ଖୋଜିବା ସକାଶେ ଜଙ୍ଗଲରେ ବୁଲିବାକୁ ପଡ଼ିଥିଲା । ଜଣେ ସାନ୍ତାଳ ରମଣୀ ତାଙ୍କୁ ପିଇବାକୁ ପାଣି ଦେଲା ।

"ଏଭଳି ପିପାସା ବୋଲି ନଥିଲି ତ ଜାଣି,
ବଡ଼ ପାତ୍ରେ ଭରି ଆଜ ଆଣିଥାନ୍ତି ପାଣି ।
ଗୁଡ଼ଇରେ ବସିଛନ୍ତେକ ଅତି ସୁକୁମାର,
ଏ ଖରାରେ କମା, ବାବୁ, ହୋଇଛ ବାହାର ?"

ସେତିକି କହି ତା ପାଣି ଢାଳୁଥାଏ ନାଗା,
ଢଳ ଢଳ ଢାଳୁଥାଏ ନେତ୍ରେ ଅଶ୍ରୁ ବାର ।
ନସୁନ ସୁହାଣି ତାର ଫେଡ଼ୁଥାଏ ପିନା,
ଅଳପ ଆଣିଛୁ ବୋଲି ମନ କଳପଣା ।
ଢାଳ ପଦ୍ମ ପାଶ ତାର ସଞ୍ଚଗଳ ଜଳ,
ଆଉ ଯାଇ ଆଣିବାକୁ ହେଲା ସେ ଚଞ୍ଚଳ ।

କି କହିବ ଯେଧ୍ୱବ, ବେଗେ ନ ଆସିଲା ଭଷା,
ବୁଝି ତ ପାରୁଛି ଯେତେ ଶମିଛି ପିପାସା ।
ବନସ୍ତ ବଚନ ଚନ୍ଦ୍ରେ ଭଷିଲି ମୁଁ ଧୀରେ,
"ଆଜ ପାଣି ପିଇବା ମୋ ଲେଡ଼ାନାହିଁ ତଳେ ।
ଏ ଯେ ସାନପାତ୍ରେ ପାଣି ଆଣିଥିଲ ଭରି,
ବଡ଼ୁଛି କି ଅଛ, ତୃଷା ନ ପାରିଲି ହରି ?
ଯେତେ ପାଣି ବହଇଟି ଏ ବଳଙ୍ଗ ସ୍ରୋତେ,
ସବୁ, ପାତ୍ରେ ଆଣି, ନାରି, ପିଆଇଛ ମୋତେ ।
ଆଜ ଲେଡ଼ାନାହିଁ ମୋର ଲବେ ପିଇବାର
ଯେତିକି ପିଇଛି ସେତ ହେଲାଣି ଅପାର ।

ଏହୁଭଳି ଖରା ନିତି ହେଉଥାଉ ମର୍ତ୍ତ୍ୟେ,
ଏ ବନ ପର୍ବତ ସବୁ ଥାଆନ୍ତୁ ଏମନ୍ତେ ।

ଗୁଳ୍ମତଳେ ବସିବାର ସୁକୁମାର ଜନ,
ଦନ୍ତୁ ଦାନ ଏ ଗଇଜେ ଆସନ୍ତୁ ଏଥନ ।
ବୁଲନ୍ତୁ ଏଭଳି ଶ୍ରୋତେ ତୃଷିତ ଜନକ,
ଏ ମାଟି କଳଶ୍ରୁ, ନୀର ପିଅନ୍ତୁ ସଲିଳ ।
ଶିର ବଚନେ ମଣ୍ଡ ନାଳ ଲେଖ୍ଡ଼ାନାଦ୍ଧି, ସନ୍ତ,
ଯେତେଦିନ ଥିବ, ଦାତେ ତୋର ଏ ପାଦପ ।"



# ଦୁଆର ଆଗରେ

କୁଆଟିଏ ବସି ମୋର ଦୁଆର ଆଗରେ
ରାବୁଥିଲା କେତେ ପରକାରେ;
ମୋର ହବୁ କାମ ଗୁଣ୍ଡ,
କି ଆଶାରେ କାନ ପାରି,
ସେ ରବ ଯେନଲ ତାର ପରଶ କୁହରେ ।

ସେତ ବଡ଼ ଅମୋଦନ ରବ;
ବସନ୍ତର ନୂଆ କୋକିଳ ସଙ୍ଗୀତ,
ଭଅଁରର ବୀଣା ଝଙ୍କାର ଲଳିତ,
ଲବେ ତାକୁ ନାହିଁ ସରି ହେବ ।

ତାର ସେନ୍ତ୍ର ସରଗ ନସ୍ୱନ
ମର ମଧୁ ସମ୍ବାଦ ମିଳନେ
କି ଅର୍ଥ ଅଛଇ, କରି ନପାରେ ମୁଁ ବୁଝି,
ଖାଲି ସବୁ କାମ ଗୁଣ୍ଡ,
ତା ଡାକକୁ କାନ ପାରି,
ଭୁନ ହୋଇ ବସି ରହିଥାଏ ମୁଁ ନମଙ୍କି;
ତା ରୂପ ନଦେଖି ପୁଣି, ରବ ତାର ଶୁଣି,
କି ଭାବନା ଭାଳେ ମୁଁ ପରାଣେ ।

କଏ ମୋ ଆସୁଛୁ ପ୍ରିୟ ପଶ୍ବରଳ ଯେତେ,
ସେତ କହୁ ନ କହ୍ବଲ
ସେହ୍ବଗର ସବୁଥିଲା,
ସେ ସବ ଯେ ଅସମଜା ମୋତେ ।

କୁଆ ବସି ସବୁଥାଏ ଦୁଆର ଆଗରେ
ଥରକୁ ଥର ମୁଁ ଚାଲୁ
ପୁଚ୍ଛୁଥାଏ କହ୍ବବାକୁ,
କଏ ସେ ଆସୁଛୁ ମୋ ଭ ଏ ପଣକୁଟୀରେ ।

ସେ ଯେ କହାଁ କହୁ କହେ ନାହିଁ,
ମୁହିଁ କେତେ କଥା ଭାଞ୍ଜେ ମନେ,
କେତେ ଚିତ୍ର ପୁଣି ଦେଖଇ ସ୍ବପନେ,
କେତେ ପ୍ରିୟଜନ ଚିତ୍ର ଆଣେ କୁଆ ବହ୍ବି,
ସଭିଏ କୁଟୀରେ ମୋର ଆସୁଛନ୍ତି ଧାଇଁ ।

କୁଆଟି ସେ ନବସ୍ତି ସେଠାବେ
ସବୁଥିଲ ଏବେ ଏଠେ ଭାବେ ।
ଚାର ସେହ୍ବ ଅବୁଝା ବଚନେ
ଏବେ ପ୍ରିୟ ଆସିବାର କହ୍ବଲ ଚକ୍ଷଣେ ।
ମୁହିଁ ବସିଅଛୁ ସ୍ବର୍ଣ୍ଣ ଅନଟମତେ,
ସେ ତା ଟିକ ପଚନ ଯୁଗଳେ,
ଉଡ଼ ଖରେଂ ବୃକ୍ଷଗାଁଲ ତା ଦୂର ସ୍ବଦେଶେ;
ଟକଡ଼େ ଗୁହୁଘର ଲହ ଫବଦେହଲେ,
ଗଲ ଆହା ମୋ କ୍ଷୁଦ୍ର ଅନ୍ତରେ

# ଋଷିକୂଲ୍ୟାର ମିନତି

ଭୂଧର କନ୍ଦରେ ଗହନ କାନ୍ତାରେ
ଜନମି ସୁଦୂରେ କାହିଁ,
ଝଲ ଗ୍ରାମ ପଦା ଠେଲି, ଋଷିକୂଲ୍ୟା
ସବେଗେ ଆସିଛି ଧାଇଁ ।

ବାଟେ ରୋଧୁଥିଲେ କେତେ ଗିରି ଶିଖ,
କହୁଥିଲେ, 'ନ ଯାଅ ଦୁରେ,'
କେତେ କ୍ଷୁଦ୍ର ହ୍ରଦ ଲୋଡ଼ୁଥିଲେ ତାଙ୍କୁ
ବନ୍ଧୁ ଧରିବାକୁ ଉରେ ।

ନ ଶୁଣି ସେ କଛୁ ଆସିଛି, ଜୀବନ
ସାଗରେ ଦେବାକୁ ନେଇ,
ସିନ୍ଧୁ ଅଙ୍ଗେ ସିନା ତା ଅଙ୍ଗ ମିଶିଲେ
ଧନ୍ୟ ସେ ପାରିବ ହୋଇ ।

ସିନ୍ଧୁ ସିନା ତାଙ୍କୁ ଉହାଇ ଉହାଇ
ପଛେ ଫେରାଉଛି ଫେଣ,
ଗୋଟି ଗୋଟି ଢେଉ ପେଷି, କହୁଅଛି
"କଥା ମାନ ଯାଅ ଫେରି ।

ମୁଁ ସ୍ଥିର ସମୁଦ୍ର          ଷାରେ ଅଛୁ ଗଡ଼
ମୋ ଚପାଡ଼ା ପରାଣ ଗୋଟି,
ତୋ ମଧ୍ୟ ଶରୀର          ଆଣି କଣା, କହ,
କୋଟେ ମୋ ପିବୁଳେ ଲୋଟି ?"

ଶୁଣି ଋଷିକନ୍ୟା          କାନ୍ଦ କହେ ଧୀରେ,
"ନ ଭାଷ ନଠୁର ବାଣୀ;
ତୋ ପ୍ରତ ପ୍ରୀତ ମୁଁ          ବନ୍ଧୁ ଯେ ଆସିଛୁ,
ଷୀର ଷାର ନାହିଁ ଜାଣି ।

"ତୋ ଷାରେ ଡାଳବ          ମୋ ଷୀଣ ଜୀବନ,
ଅନ୍ତର କାମନା ମୋର;
ତୋ ଲାଗି ବନ୍ଧୁଛି          ଏ ପ୍ରାଣ ଭାବ ମୁଁ,
ପଚାଇ ଦଅ ତୁ କୋଳ ।

"ନୋହିଲେ ଲେଟିବ          ସଇକତ ଶେଯେ,
ପଶିବ ଭୂଗର୍ଭେ ଧୀରେ,
ପଶିଥିଲେ ଯେସ୍ନେ          ବସୁଧେ ଜାନକୀ
ଶ୍ରୀରାମ ନଠୁର ଗୀରେ ।

"ସ୍ନେହ କି, ପ୍ରିୟ, ତୁ          ନ ବୁଝୁ ହୃଦୟେ,
ବନ୍ଧୁ ଏ ତରଳପ୍ରାଣ ?
ତୋ ବଚନେ ମୋର କି,          କହ, ଅଛି ଗତି
ବକ୍ଷେ ତୋର ଦଅ ସ୍ଥାନ ।"

# ବାଷ୍ପ

ସ୍ୱଚ୍ଛ ପୁଷ୍ପରାଜ୍ୟେ ପୁଣ୍ୟ ରାଣୀ ଗୋ ମାଳତି,
କାହିଁପାଇଁ ଏତେ ତୋର ସେନେହ ପୀରତି ?
ଅନାଇ ରହିଛୁ ବାଟ କାହା ଆସିବାର,
ଗୁନ୍ଥି କାହାପାଇଁ ନିତି ରଖୁ ପ୍ରୀତିମାଳ ?
ନୟନ ପଲକେ ସୁଖେ ସ୍ୱର୍ଗିକୁ ଧିଆନେ,
କି ଦୂର ପ୍ରତିମା ମୁଖେ ଲୁଚିଛ ପରାଣେ ?
କପାଇ ତୋର ଗୋ ଏତ୍ତ ନିତି ସ୍ୱର୍ଗ ବସା,
କି ବାଞ୍ଛା ସିଦ୍ଧିକି ଏତେ ଜୀବନ ତପସ୍ୟା ?
ଦିବାନିଶି ଅବିରଳ ବସି ଯୋଗାସନେ,
ଅଟଳ ସାଧନା ସାଧୁ କି ପୁଲକ ମନେ ।
ନିତି ପ୍ରେମେ ଗୁନ୍ଥାମାଳ ଶୁଖେ ତୋର ନିତି,
ଆଶା ମାତରେ ଟି ଦିନୁଁ ଦିନ ଯାଏ ବିତି ।
ପୁଣି ଆଶା ଧରି ବସୁ, ସେ ପଥ ଅନାଇଁ,
ନୂଆ ଫରି ଗୁନ୍ଥି ରଖୁ ମାଳଟି ତା ପାଇଁ ।

କଏ ସେ ଏଭଳି ଅଛି ଏ ବିଶ୍ୱ ଭିତର,
ତୋର ଏତେ ସାଧନାର ଉଚିତ ପାତର ?
ତୋ ଜୀବନେ ଅଛି ଯଦି ଏତେ ସ୍ୱର୍ଗ ବସା,
ଏ ମହା ସାଧନା ସଙ୍ଗେ ଏ ନିରାଶ ଆଶା ।
ତୋ ହାତର ଏତେ ମାଳା ବାସି ହୁଏ ଯେବେ;
ମୋ ପରାଣ ନିରାଶାର ହେତୁ କିବା ହେବେ ?

—•—

# ବାଛୁରୀକୁ ସାନ୍ତ୍ୱନା

'ହେ-ମା ହେ-ମା' ରବେ          କେତେ ତୁ ଡାକୁଛୁ,
ମୁହୂର୍ତ୍ତେ ନୋହୁଛୁ ଥିର,
ନୟନ ଯୁଗଳୁ          ଢାଳୁ ଅବିରଳ
ଫଗୁଣ ଦୁର୍ଲଭ ନୀର ।
ନ ଜାଣୁ କି ମାଆ          ନ ଶୁଣେ ତୋ ଡାକ,
ବାଟ ଦୂର ଦେଶେ ଗଲ ?
ପାଞ୍ଚ କୋଶ ଏବେ          ପାର ତ ହେବଣି
କୂଦ ବନ ପଦା ବାଲି ।

---

କବିଙ୍କର କଟକ ବାସଭବନରେ ଗାଈ ସଂଖ୍ୟା ଦୁଇରୁ ତିନ ହୋଇଯିବାରୁ, ସେ ଦୁଇଗୋଟି ଗାଈ ତାଙ୍କ ବାଣପୁର ଘରକୁ ୧୯୪୮ ମସିହାରେ ପଠାଇଦେଲେ । ସେ ଦୁଇ ଗାଈ ମଧ୍ୟରୁ ଗୋଟିକର ଛଅବର୍ଷ ବୟସର ବାଛୁରୀ କଟକରେ ରହିଗଲା । ସେ ଏବେ ଦୁଇଗୋଟି ବାଛୁରୀ ଜନ୍ମକରି ନିଜେ ଗାଈ ହେଲାଣି । ତା ମା ଏ ମଧ୍ୟରେ ବାଣପୁରରେ ମରିସାରିଲାଣି । କଟକରୁ ବାଣପୁର ପ୍ରାୟ ଅଶୀ ମାଇଲ । ବାଟରେ କାଠଯୋଡ଼ି ଓ କୁଆଖାଇ ପାରି ହୋଇଗଲା ପରେ ଅନେକ ବଣ, ପାହାଡ଼, ପଡ଼ିଆ ପଡ଼େ । କବିଙ୍କର ପତ୍ନୀ ଗୋରୁଗାଈ ଓ ଅତିଥି ଅଭ୍ୟାଗତଙ୍କ ଚର୍ଚ୍ଚା ବିଶେଷଭାବରେ କରନ୍ତି ।

ଖରା ତାପେ ଦେହ  ଝାଉଁଳି ଯିବଣି,
ପାଦେ ଲାଗିବଣି ବଥା,
ଗଛଡ଼ାଳୁ ପଡେ  ଶୁଣୁଥିବ କାନେ
ବନ କୁଆ ବଣି କଥା ।
ଏହିପରି ଦିନ  ସରୁ ସେ ସରିବ,
ଘୋର ହୋଇଯିବ ଖରା,
ଫେରିବାକୁ ବାଟ  ସରୁ ନାହିଁ ତାର,
କେବେ ଲାଗିଥିବ ଝୁରା ।
ସକଳ କୋଣେ ସେ  ଯାଇଛି ଉତ୍ସବ,
ପାଳି ବାନପ୍ରସ୍ଥ ବ୍ରତ,
ବୁଢ଼ୀ ବୟସର  ନୂଆ ସାଥି ମେଳେ
ନବ ଆବେଷ୍ଟନେ ରତ ।
ତୁ ହେଲୁ ପିଲାରୁ  ତିନ ବର୍ଷ ଛଡ଼ା।
ଦେଲୁ ମାତୃସ୍ତନ ତେଜ;
ଆପେ କାଲି ମାଆ  ହୋଇ ତ ବସିବୁ,
କହକି ନ ପାରୁ ହେଜ ?
ଷଠୀ ଯେ ଜଗତେ  ସୃଜୁଛି ପ୍ରାଣୀଙ୍କୁ
ଏହିତ ଅଟେ ତା ଲୀଳା;
ଜଣେ ଆସି ମଞ୍ଚେ,  କାର୍ଯ୍ୟ ସାରି ଚାଲେ,
କୋଳୁ ରଖିଯାଏ ପିଲା ।
ନ ଦୁଃଖ ଅବୁଝା,  ବାପୁଣି, ନୟନୁ
ନ ବୁହା ଲୋତକ ଧାର;
ଏ ଗୋରୁ ଜନମେ  ଗଡ଼ରେ ନିଜକୁ
ମର୍ତ୍ତ୍ୟେ ବହିବାକୁ ଭାର ।

ମାଆ ଯେ ଯାଉଛି   କ୍ଷଣୁ କ୍ଷଣେ ଦୂରେ,
ପ୍ରବାସେ ରହିବ ଯାଇ;
ଏ ସାରା ଜୀବନେ   ମାଆ ଟିଏ ବିନେ
ଭେଟ ଆଉ ହେବ ନାହିଁ ।
ପ୍ରବାସେ ଦେହଟା   କେବେ ଅଲକ୍ଷିତେ
ଉଡ଼ିଯିବ ପ୍ରାଣ ବାୟୁ,
ଅସ୍ଥି-ମାଂସ ତାର   ମାଟିରେ ମିଶିବ,
ସତ୍ତ୍ୱ ନ ରହିବ ଆଉ ।
କଣ୍ଠାଗତବେଳେ   ତୋ କଥା, ବାପୁଣି,
ପଠେ ଚଳିଛିସ ଘର,
ସ୍ମୃତି ପୀଠେ ତାର   ଉଇଁ ଅସ୍ତ ହେବ
ନେସ୍ ମାର ଯିବ ସ୍ୱର ।
ଯା ଦେହର ମେଦ   ଅସ୍ଥି ଉପାଦାନେ
ଗଢ଼ା ଯେତୁ ଏ ଜଗତେ,
ଯେତେ ଚଶୁ ଟେଲେ,   ଅନ୍ତିମ କ୍ଷଣେ କି
ମନୁ ଭସୋରିବ ସତେ ?
ବିଧାତା ଯେ ଜୀବେ   ଦେଇଛି ଜୀବନ,
ସଙ୍ଗେ ମୃତ୍ୟୁ ଅଛି ସୃଜ,
ଅନ୍ତରୁ ଅନ୍ତରେ   ମିଶିଯିବା ପାଇଁ
ଆଖି ଦେଲ ଦିନ ବୁଜ ।
ଚେତନବେଳେ ତ,   ମାଆ, ଟିଏ ହେବ
ସବୁ ମନ ଘେନା ଘେନ,
ଭେଟ ସିନା ଭାଗ୍ୟେ   ନ ଘଟିବ, ଯିବ
ମିଳି ପରସ୍ପରେ ବେନ ।

ସେ ମୁହୂର୍ତ୍ତ ଲାଗି        କରୁ ଛୁ ପ୍ରତୀକ୍ଷା
ଗଢ଼ିଯାଉ ଏ ଜୀବନ,
ବୃଥା 'ଦେ-ମା' ଡାକେ        ନ ଶୁଖାଉ ଗଳା
ନ ତିନ୍ତା ଲୁହେ ନୟନ ।
ନ ଭାଳ; ସେ ବେଳେ        ଶୋଷେ ବା ସନ୍ତୁଁଷ
ସେ ଆୟୁ ଯାପିବ ସୁଖେ,
ଦୟାବତୀ ତାର        ନୂଆ ଖାଉଦାଣୀ
ନଜେ ଭୋଜ୍ୟ ଦେବେ ମୁଖେ ।



# ଆସିଛୁ *

ଏତେ ଦିନ ଅନ୍ତେ ଆସିଛ ତୋସର
 ବାହୁଡ଼ି ଏ ବନମାଳେ;
ତୁମ ତୁଳେ ପୁଣି ହସି ଖେଳ, ବାବୁ,
 ରହିବ ପୁଲକ ଭରେ ।
ଏକାନ୍ତେ ସେ ଦିନ ହରଷ ବିଷାଦେ
 ଚପି ରହିଥିଲ ସ୍ଫୂର୍ତ୍ତି,
ଗୋଟି ଗୋଟି ତୁମେ, ଆଖି ଆଗେ ମୋର
 ଫୁଲିଗଲ କେତେ କାନ୍ତି ।
ବଡ଼ ସକାଳୁ ମୁଁ ସାରି ତର ତରେ
 ପାହାନ୍ତ କରମ ମୋର,
ସରସୀ ପୁଳନେ ଝଙ୍କରିଲ ଆସି,
 ଦେଖି ସୁଖ ଶିଶୁ ତାର ।।

---

* ଅବକାଶ ପରେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନେ ଘରୁ ଫେରି-ଆସିବା ଉପଲକ୍ଷରେ ଏ ପଦ୍ୟ ଲେଖାଯାଇଛି । ସମ୍ବଲପୁରଠାରୁ ନଗ୍ରଜମଧ୍ୟରେ ମହାନଦୀର ଶୋଭା କଟକ ତୁଳନାରେ ବହୁତ ବେଶୀ । ସୋଲଙ୍ଗ ଓ ଘଣ୍ଟଶିଳା ବାଣପୁରର ଦୁଇଚୋଟି ପାହାଡ଼ । କବି ଓଡ଼ିଶାର ନାନା ଅଞ୍ଚଳ ବୁଲି ଦେଖିଛନ୍ତି । ସରଳ ପ୍ରାକୃତିକ ସୌନ୍ଦର୍ଯ୍ୟ ଅପେକ୍ଷା ଛାତ୍ରମାନେ ଥିବାବେଳର ସତ୍ୟବାଦୀ ବିଦ୍ୟାଳୟର ଶୋଭା ତାଙ୍କ ପକ୍ଷେ ବଡ଼ । ଏ ପଦ୍ୟରେ ସେହି ଭାବ ପ୍ରକାଶ ପାଇଛି ।

ତୁମେ ତ ସେଠାରେ କେତେ କେ କ ଘରେ
ଯାଇ କରିଥାନ୍ତ କେଳି,
ତା ଶୀତଳ ଜଳେ ପଖାଳ ଚରଣ,
କୁଟୀରେ ଆସନ୍ତ ଫେରି ।
ଘରି ଚନ୍ଦ୍ର ଜ୍ୟୋତ୍ସ୍ନା ଖେଳଇ ସଲିଳେ,
ଚଳ ଧୀର ସମୀରଣେ,
ବିହଗ ନିକର ଉଡ଼ି ଗାଉଥାନ୍ତ
ତୁମେ ତହିଁ ନାହିଁ ଜଣେ ।
ସୋଦର ସେନେହେ ଉଦ୍ଧଥାନ୍ତ, ଏ ଯେ
କୁଟୀର ଉଆସ ପୁରି,
ଜଣେ କାର ଜ୍ୟୋତ୍ସ୍ନା ଆଉତ ନ ଆସେ
ନମିବେ ଅପୂନ ଭୂଲି ।
ଛୁଇଁଅଛି ବଟ ତମାଳ ନିକୁଞ୍ଜେ
ବିହରି ହରଷତ ପ୍ରାଣେ,
ନିକୁଞ୍ଜ କୁସୁମ ପରିଏ, ବାବୁ ହେ,
ଶୋଭୁଥାନ୍ତ ସନମାନେ ।
କେତେ ବଡ଼ ଦଇଶିଖ ନୋହୁଛି ଏହି ଯେ
ବିଶାଳ ବକୁଳ ବନ,
ପଞ୍ଚ ଘାଟ ଘଇ ସରସୀ ପ୍ରାନ୍ତର
ବିଜେ କେତେ ଅଘଟଣ ।
ଯେତେ ଯହିଁ ସୁଖେ ପୂର୍ବ ରହି ଥାନ୍ତ
ଏ ଗୁପତ ବୃନ୍ଦାବନେ,
ସେତେ ସେତେ ଠାବେ ତୁମ ମୂରତି ହେ,
ନେଇ ମୁଁ ନ ଦେଖେ କ୍ଷଣେ ।

କେତେ ମୁ ବିଦେଶେ ଦୂରେ ପାଶେ, ବାବୁ;
ଭ୍ରମିଲି ନିରତେ ଯାଇ,
କେଉଁ ଠାବେ କାହିଁ ଏ ମୋହନ ଶିଶୁ
ନିମିଷେ ଦେଖିଲି ନାହିଁ ।
ଶିଳା ଶେଯେ ଢଳ ମଧୁ ଜଳ ଗୀତେ,
ପ୍ରସାରି ବିଶାଳ କାୟା,
ଲୁଚିଲି କମ୍ଟେନ ଘନ ବଣ ତଳେ
ଧଟେଶ୍ୱର ଗିରି ଗୁମ୍ଫା,
ଆସେ ବନ୍ଧୁ ଯହିଁ ସ୍ନିଗ୍ଧ ଚନ୍ଦ୍ରୋପଳା,
ସେ ସୁଧା ଧଉତ ଶରେ,
ପାହାନ୍ତ ପ୍ରଦୋଷ ଶିଶୁ ଢଳବାର
ଦେଖିଲି ଚପଳ ମାରେ ।
ଚିଲିକା ସଲିଳେ ଭଜ ବେଣୁ ଗୀତ
ଖେଳାଇ ବଦନ ଶୋଭା,
ତରଳ ଅପ୍ସନେ ବିହରି ଆସିବା
କେତେ ଆହା ମନ ଲୋଭା !
ସୋଲର ଶ୍ୟାମଳ ଚରଣ ଛପିନେ
ଉଦାସ ନୟନେ ଚାହିଁ,
ସାୟାହ୍ନ ଗଗନେ ଗିରି ବଣ୍ଟିଳା
ଦୂରେ ନିରେଖିବା ଯାଇ ।
ସକଳ ସମ୍ପଦୁ ବଡ଼ ସମ୍ପଦ ଯେ,
ହୃଦୟ ଅମୂଲ୍ୟ ନିଧି,
ଯାହା ପାଇଁ ଅଜ ତ୍ରିପାଠି ଦେଇଛୁ
ଜୀବନ ମୋହନ ବେଦୀ,

ସେ କେଉଁ ନିମିଷେ ଶୂନ୍ୟ ହେଲେ, ବାବୁ,
ଶୂନ୍ୟ ଏ ପରାଣ ମୋର,
ଆକାଶ ଅବନୀ ନ ଦିଶଇ ମୋତେ,
ଆପଣା ହୁଅଇ ପର ।

ଏତେ ଦିନ ଅନ୍ତେ ଆସିଛ ଦୋସର
ଫେରି ଏ ନିକୁଞ୍ଜ ବନେ,
ତୁମ ତୁଲେ ସୁଖେ ଖେଳି ବୁଲି ନିତି,
ରହିବି ପୁଲକ ମନେ ।
ପଡ଼ା କୁଞ୍ଜେ ପୁଣି ଆବାସେ ଆନନ୍ଦେ
ବିହରି ଭ୍ରମରି ମେଳେ,
ଜୀବନର ମୋର ରଚିବ ସରଗ
ଏ ମର ଅବନୀ ତଳେ ।
ପାହାନ୍ତ ସମୀରେ ସୁଖେ ଗାଇବାର
ନିକୁଞ୍ଜ ବସନ୍ତଦୂତ,
ତୁମ୍ଭ ତୁଲେ ଖୋଜି, ଭରିବ ପରାଣ;
ତୋଷିବ ବଧୂର ଚିତ୍ତ ।
ନିଶିଥିନୀ ନଭେ ନିରେଖି ନିମେଷେ
ଉଜଳ ତାରକାଗଣ,
ସେ ମେଳେ ତୁମରି ମେଳାପେ,ବାବୁ ହେ,
ମିଶି ହୋଇଯିବ ଲୀନ ।
କରମେ ବଚନେ ଯେତେ ଯାହା ଦିନେ
ଅଛୁ ଅବାଞ୍ଛିତ କରି;
ଅନନ୍ତ ସୋଦର ସେନେହେଁ ସକଳ
କ୍ଷମିବ, ଏତିକ ଅଳି ।

# ଫୁଟନା

ଦୁଆର ଆଗେଟି ଫୁଲଗଛ ମୋର,
ଫୁଲେ ଡାଳ ପତ୍ର ସୁଧା ଢଳଢ଼ଳ ।
ଧୂଳି ତଳେ ଶାଖା ଯାଉଅଛି ଲୋଟି,
ଦେଖେ ଅଛି ଫୁଲ ଧୂଳି ଦଶଯେ ଫୁଟି ।
ଭେଦି ବାତାୟନ, ଶବଳିତ ତନୁ
ଉଦାସ ପଲକ ହରେ ମୋ ନୟନୁ ।
ହସି ଅଳକ୍ଷିତେ କେଶର ସମୀରେ,
ଖେଳ ଖେଳ ଯାଏ ମୃଦୁଳ ଲହରେ ।
ବିବଶ କରମ ଶରମ ବିଭୋର,
ଚହିଁ କପାଁ ହୃଦ ହୁଏ ମୋର ଭାଳ ?
ରଜନୀ ସୋହାଗ ଶୟନ ସପନେ,
ସେହ୍ନି ଛବି ଗୁଣି ଲଳିତ ସ୍ମରଣେ ?

"ଫୁଲ ଆରେ, ଜାଣେ ଶୋଭିବୁ ନକର,
କେଶର ହିଲ୍ଲୋଳେ ଭରିବୁ ସମୀର ।
ଆଣିବୁ ବସନ୍ତ ବନପ୍ରିୟ ଲୋଡ଼ି,
ନିକୁଞ୍ଜ ନିମେଷ ଆତିଥ୍ୟ ଆଦର ।

ହୃଦୟ ଅମୃତ ରସାରେ ନିବସି,
କଣ୍ଠ ଧାର ଯେବେ ଢାଳିବ ସେ ହସି;
ଶୁଣିବେ ଜଗତ ବିମୋହିତ ଜନ,
ଫୁଲ ରେଣୁ ଛାନେ ଭରିତ ଶ୍ରବଣ ।
ଦିନକ ଜୀବନ ଲଭି ଏ ମରତେ,
ଏଥୁ ବଳି ବେଶି କି କରନ୍ତୁ ସତେ ?
ଦିନଟି ଯାବତ ସଙ୍ଗିସଙ୍ଗ ମେଳେ;
ସେନେହ ଆଳାପେ ଯାପିବୁ କୁଶଳେ ।

ପ୍ରାଚୀ ଦିନମଣି କନକ ବରଣେ,
ଯେ ନୟନ ଫେଇ ଚାହିଁଲ ଭୁବନେ,
ପ୍ରତୀଚୀ ଗଗନେ ସେହି ଦିନମଣି
ସ୍ୱର୍ଣ୍ଣ ମେଘେ ଯେବେ ବୁଡ଼ିଯିବେ ପୁଣି;
ମୁଦି ତେବେ ସେହି ନୟନ ଯୁଗଳ,
ଝସି ଆଦି ତଳେ ଢଳିବୁ ଆବର,
ଯେଷି ବୃନ୍ତବାସୀ ବାନ୍ଧୁତ କଳିକା
ଛାତେ ଫେଇବାକୁ ସ୍ୱରୁ ତନୁ ଲେଖା ।"

"ଫୁଲ, ଆମେ ପୁଷ୍ପ ପରାଣ ଏ ଭବେ,
ସୁଖ ଦୁଃଖେ ହୃଦ ଦହୁନାହିଁ ଲବେ ।
ଫୁଟିବା ଝଡ଼ିବା ସମାନ ଦୁଇଟି;
ଝଡ଼ ପିନା ସୁଖ, ଚଣ୍ଡାଳେ ଫୁଟି ।
ମଣନା, ମାନବ, ଅଜ୍ଞାନ ଜଡ଼ାଳେ,
ବଞ୍ଚି ବଢ଼ ହେବୁ ଏ ଧର ସଂସାରେ ।

ଫୁଟି ଲୁ ଝଡ଼କୁ ଉଦାସ ହୃଦୟେ
ସୁଧା ଆବର୍ତ୍ତନେ ଅନନ୍ତ ସମୟେ ।
କେବେ ତରୁଡ଼ାଳେ ଶୋଷିବୁ ନଜର
ଆମଗ୍ରୁ ମେଳେ କନକତ ଫୁଲ ।"

"ଫୁଟ ନାହିଁ, ଫୁଲ, ଫୁଟନା ଏଭଳି,
ମୃଦୁ ସମୀରଣେ ମଧୁ ମନ୍ଦେ ଢଳି ।
ଧୂଳି ଶେଯେ ବୃଥା ଯାଉଅଛ ଲେଟି,
ଦଗଇ ଉଦାସେ ତନୁ ହେମ ଜ୍ୟୋତି ।
ଫୁଟୁଛ ଶ୍ମଶାନେ, ପୃତକା ପ୍ରାନ୍ତରେ,
ଅଦ୍ଭୁତ ମାନବ ପଥେ ପାଦତଳେ ।
ଫୁଟ ଯେତେ ଠାବେ ଫୁଟରେ ବାସନା;
ଏ ତନୁ ତଳପେ ଫୁଟନା ଫୁଟନା ।
ଅଙ୍ଗେ ଲାଗିବାର ବାଲି ଧୂଳି ମାଟି,
କୁସୁମ କେଶରୁ ନଭବାର ଜ୍ୟୋତି—
ଦେଖିବ କପରେ, ଧର ଏ ନୟନ ?
କହିବ—"ଫୁଟରେ ଅଯତ୍ନ ମଳିନ ?
ଫୁଟ ନାହିଁ, ଫୁଲ, ଫୁଟନା ଏଭଳି,
ଛାଡ଼ି ଛାଡ଼ି ଢଳେ ପଡ଼ ବେଗେ ଝଡ଼ି ।
ଛାଠ ତନୁ ସେନ ରକ୍ତ ଏ ପାଦପ,
ନଅରି ଜଗତ ଯୋଗ୍ୟ ପ୍ରତିରୂପ ।"



# ଭେଟି

"ଟହ ଟହ ହୋଇ ପାଚିଥିଲା ଡାଳେ
ଆଣିଛୁ ଯତନେ ତୋଳି,
ସାଂଧ୍ୟ ଉପାୟନେ, ନ ଜାଣେ, ସଖା ହେ,
କା' କରେ ସମ୍ଭବ ହୋଇ ।
ତୋଳି ନିଜେ, ସୁଖେ ଲୁଣ୍ଠିଥାନ୍ତ ନିଜେ,
ଚିତ୍ତ ମୋ ବଳନ୍ତା ନାହିଁ,
ଏ ସ୍ୱର୍ଗ ମଧୁ କି ମୋ ତିକ୍ତ ଅଧରେ
ପରଶି ପାରନ୍ତା କେବେ ?
କରେ କା' ନ ଥାପି, ଫିଙ୍ଗିଦେବ ତଳେ,
କେତେ ତ ପାଞ୍ଚିଲି ମନେ,
ନମିବେ ମୁରୁଛି ପିଙ୍ଗି ନ ପାରିଲି
ଲକ୍ଷ୍ୟକର ବସ୍ତୁରଣେ ।
କାହେ ଦେବ, ଆହା କେବଣ ଜନ ସେ,
କେ ପାଟ ଅଛି ତା ପାଇଁ,
ଆଲୋକ ଝରାରେ ବନ ପଦା ପରେ
ଖୋଜ ନ ପାଇଲି କାହିଁ ।

ଆସିଛ ସଖା ହେ ଦେଖ ମୁଁ ଅଛପି
ଯେମନ୍ତ ବଡ଼ାଇ କର,
ତୁମ ଭକ୍ତ ଜନ ପାଇଁ ପିନା ଏଣ୍ଡ
ବନ୍ଧି କରି ଆସେ ଜୁର ।
ଭାଗେ ଥିଲେ, ତରୁ ଶୋଭା ସେ ବଢ଼ାଇ-
ଥାଆନ୍ତା ନିଖିଳ ବନେ,
ତୁମ କରେ ଏବେ ଶୋଭୁବ ମରଛ—
ପ୍ରୀତି ଅକଳଙ୍କ ଧନେ ।
"ନଅ, ବନ୍ଧୁ, କରୁ କର ବଡ଼ାଇ ହେ,
ଇଙ୍ଗି କି ପାରିବ ଧରି ?
କେଇ କ ପାରିବ ଏ ମର ଗୀବନେ
ଏଭଳ ସମ୍ପଦ ବରି ?
ଫୁଲ ପରି ଏନେ ହସି ନାହିଁ ଛୋଷ,
ଫଳ ପରି ଭଳ ଛଳ,
ଛୋଳିବା ଜନର ପରାଣ ପୁଲକ
ଏନେ ତ କୋହ୍ବୁ ମୋର ।
ବନ ଘରବରେ ବୁଲି ମୁଁ ନିରଛେ
ପାଲଟିଛୁ ବନ ତରୁ,
କାଠ ପାଷାଣେ ତ ଗଢ଼ିଛୁ ଏ ତନୁ,
ଗୀବନ କରିଛୁ ମରୁ ।
ଯାହା କରେ ଯାହା ଶୋଭୁବ ପିନା ହେ,
ସେ ତାହା ପାଉଇ କେଇ,
ମୋ ଲଗି ଏ ନୂତନ ଯୋଗ୍ୟ ଉପାୟନ,
କ ଲଭ୍ୟ ମୋ କରେ ଦେଇ ?"

"ଗଛ ମୁଁ ସରଳ ଜଡ଼ ଏ ଜଗତେ,
ଚର ଫୁଲ ଫଳେ ଗଢ଼ା,
ମୁଁ କିବା ବୁଝିବି କି ସୁଧା ନିର୍ଝରେ
ବନ୍ଧୁ ବନ୍ଧୁ ହୃଦୟର ?
ଝଡ଼ୁ ଝଡ଼ ଅନ୍ତେ ସେନେହ ବରଷଣେ
ବନ୍ଧୁଛି ତନୁଜ ଭାର,
କାଟୁଛି ପଲ୍ଲବ ଫୁଲ୍ଲିବୁ ସୁମନ
ସୁମନୁ ଝରଇ ଫଳ ।
ସାର୍ଥକ କରନ୍ତୁ ଏ ତରୁ ଜୀବନ
ଝଞ୍ଜାବନ ପରଶରେ,
ମୋ ଫଳ ଭାଗରୁ ଏ ବନ୍ଧୁଟି ଯେବେ
ସେବନ୍ତା ଗୋଟିଏ କରେ ।
ଫଳ ବନ୍ଧିବାର ତେଜନ୍ତୁ ଜନମା-
ସେନେହ ବାସନା ଭବେ,
ଫୁଲ ଝରେ ତନୁ ନୁଆନ୍ତୁ ଉଷତେ
ବନ୍ୟ ତରୁ ଗଉରବେ ।
ମଳୟ ସମୀରେ ଲେଉଡ଼ନ୍ତୁ ସଗର୍ବେ
ମୋ ଶୋଭା ପରଶ ପାଇଁ,
'ଝଡ଼ର ପରାଣ ଗାଥା ଫେଡ଼ ଥରେ'
କହନ୍ତୁ କୋକଳେ ସଭ ।"

ଏକ ସଖା ହାତେ କୋଳ ଠଣ ଠଣ
ଅନାଇ ଅପର କ୍ଷଣେ,
ନୀରବ ନୟନେ ନିରେଖିଲା ତରୁ
ସାନ୍ଧ୍ୟ ଅଧ ଆଲୋକନେ ।

କଦା ସେ ଭାଳିଲା ହୃଦୟ ବସାରେ
ନମିଷ ମଞ୍ଜନ ଭାଷେ,
ଲୋଚକେ ଅକୂଳ କମ୍ପେଲା ନୟନ
ଅଧର ମୃଦୁଳ ହାସେ ।
ବଢ଼ାଇ ଭୁରଚେ କର ଯୁଗଳ, ସେ
ସଖାର ଦେଲେ ଭେଟି,—
"ଏହ୍ନ ସ୍ନେହ ସଦା ରଖିଥିବ, ବନ୍ଧୁ,
ଏ ଡୋର ନ ଦେବ କାଟି ।"



# କି ଦାନ !

ହସ ହସ ମୁଖେ, ବନ୍ଧୁ, ଅଶ୍ରୁଳ ନୟନେ
ଦେଇଥିଲ ସୁମନ ଟି, ପଡ଼ଇ କି ମନେ ?
ନିମିଷେ ବଢ଼ାଇ ହାତ, କେଜାଣି କାହିଁକି,
ନିଜସ୍ୱ ପରାଏ ହାତୁଁ ନେଲି ଫୁଲଟିକି ।
ମୋହନ ପ୍ରତିମା ଫୁଲେ ପଲକେ ଅନାଇଁ,
ଫେରାଇଲି ଆଖି ତୁମ ଦରଶନ ପାଇଁ ।
ଆଖି ଆଗୁ କାହିଁ ତୁମେ ଯାଇଥିଲ ଲୁଚି,
ନେଷେ ସେ ଯେ ଅଶ୍ରୁଟିକି ନୂହଇ ମୁଛୁଛି ।
କେତେ ତ ଲୋଡ଼ିଲି ଫୁଲ ଧରିଥାଇ ହାତେ,
କେତେବେଳ ଅନାଇଲି ତୁମ ଯିବା ବାଟେ ।
ନିରାଶ ଅନ୍ତରେ ଶେଷେ ଆସିଲା ଉତ୍ତର—
"ଭୁଲିଗଲେ, ଦେଇଛନ୍ତି ଦେଖେ କି ସମ୍ଭାର ।"

ଏବେ ତ ଦେଖୁଛି, ବନ୍ଧୁ, ସୁମନ ସମ୍ଭାରେ,
ମିଶିଯାଇଅଛ ତୁମେ କେଶର ଉପରେ ।
ହାତର ଫୁଲଟି ଆହା ଏତେ ମଧୁମୟ,
ନିଭୁଛି ତାରିହିଁ ମୋର ପରାଣର ଲୟ ।

ମୁଖର ସେ ହସଟିକେ ସମର୍ପିଥିଲି ନିଧି;
କାଳ ଗର୍ଭେ ସିନା ତାହା ଲୁଣ୍ଠଇଛି ବିଧି,
ଫୁଲେ ଆଜ ସନ୍ନିହିତ ମୋ ସାରା ଜୀବନ,
ଫୁଲଟି ସେ ହୋଇଛି ମୋ ପରାଣ ରତନ ।

ସେ ଯେ କି ହସନ ନିଧି ରଖିବ ମୁଁ ନାହିଁ,
ବେନଯାଅ, ସୁଖେ, ବନ୍ଧୁ, ଦେଉଛି ଯେ ଟେଇ ।
ଏ ଦାନ ଅମୂଲ୍ୟ ଏଡେ ଦାତାଠାରୁ ବଳ,
ଦାତାର ସମ୍ପଦ ଭଲେ ନ ପାରେ ମୁଁ କଳି ।



# ପରିଚୟ *

କାହୁଁ ସେ ଆସିଲ, ସଖା, ଦେଇଗଲ ଦେଖା ମୋରେ ?
ମୁଁ ତ ଥିଲି ନିର୍ଜନେ ମୋ, ମୋ ଧ୍ୟାନ କୁଟୀର ପୁରେ ।
କିପାଇଁ ଗଲ ହେ ଏଥି ନିମିଷ ମାତର ବସି,
ନୟନ କନକ କୋଣେ ପ୍ରୀତି ଆଳାପନେ ହସି ?
ଜାଣି ତ ନ ଥିଲି କେବେ ଶୟନ ସପନ ଭ୍ରମେ,
ଚରାଚରେ ସ୍ଥିତି ତବ, ଅସୀମ ଅବନୀ ବ୍ୟୋମେ ।
କେତେବେଳ ଅନ୍ତେ, ବନ୍ଧୁ, ଶରମେ ପୁଚ୍ଛିଲି ନାମ,
ତେବେ ହେଲେ, କେତେ ଦଣ୍ଡେ ହୋଇଗଲା ବିସ୍ମରଣ ।
ଆବର ପୁଚ୍ଛିବା ଲାଗି ମନ ମୋ ବଳିଲା ନାହିଁ
ବିସ୍ମରଣେ, ବନ୍ଧୁ ମୋର, ଉଭେଇଟି ଗଲ କାହିଁ ।

---

* ଏ ପଦ୍ୟର ନାୟକ 'ନବ ପରିଚିତ ବନ୍ଧୁ' ଜଣେ ବାଲେଶ୍ୱରବାସୀ ଯୁବକ । କବିଙ୍କ ସଙ୍ଗେ ପ୍ରଥମ ପରିଚୟବେଳେ ସେ କଲିକତାରେ ପଢୁଥିଲେ । ପରେ ସେ କୋରାପୁଟ ଜିଲ୍ଲାରେ ଶିକ୍ଷକତା କଲେ । ସେ ଜଣେ ସାହିତ୍ୟିକ, ମାତ୍ର ସାହିତ୍ୟ ସେ ନିଜେ ଲେଖିବା ଅପେକ୍ଷା ଭଲ ବୁଝୁଥିଲେ । ବଲାଙ୍ଗିରପାଟଣାରେ ବାଲ୍ୟଜୀବନ କଟାଇଥିବାରୁ ବନପର୍ବତର ପ୍ରାକୃତିକ ଦୃଶ୍ୟ ତାଙ୍କୁ ଭଲ ଲାଗୁଥିଲା । ଏବେ ସେ ଆଉ ଇହଧାମରେ ନାହାନ୍ତି ।

ଛବାସ୍ତୁ ଖେଳର ସେ ଯେ ନୟନ ପଲକ ଖେଳା,
ହୃଦୁଁ ହୃଦେ ବନ୍ଧିବାର ସରଗ ଅମୃତ ଧାଗା;
ଅଧବାଟୁ ସଙ୍ଗେ ମୋର ଆସି ଚଞ୍ଚ ବିଷାଦଣେ,
ଅଧ ଆଳାପନେ ଏଥି ନବସି ମଗନ ମନେ,
ବରପଦ ଷେପେ ପଥେ କି ଅଦୃଶ୍ୟ ଡୋରେ ଟାଣି,
କୁଟୀର ଦୁଆରେ ମୋର ମାଗି ଯେ ନେଲ ମେଲାଣି—
ସକଳ ବିସୋରି ମନୁ, ଗଲ ଅପସରି କାହିଁ,
ମନ୍ଦନେ ନିମିଷ ବେନି ରହିଲ ମୁଁ ବାଟ ଚାହିଁ ।

ମଧୁ ଶ୍ରୀପଞ୍ଚମୀ ଆଜ, ନବ ଋତୁ ଭୁଲେ ମିଳ,
କି ପୁଣ୍ୟ ସ୍ୱପ୍ନେ ଖେଳେ ଜଗତ ଅନନ୍ତ ଶିଶୁ,
ନବ ପିକ ସୁଧା ସ୍ୱନେ ଶିଶୁ କଳକଣ୍ଠବାଣୀ,
ଶୀତଳ ସାୟାହ୍ନ ନଭେ ବାଳୁତ ରଜନୀ ରାଣୀ;
ବାତାୟନେ ବନ୍ଧୁ ଧୀରେ ଆସଇ ମଳୟ ଧାର,
ଚରୁ ସନ ସ୍ୱନ ସ୍ପନ୍ଦେ ତାଳ ଏ ପରାଣେ ମୋର ।
କି ଭାବେ ନେଉଡ଼ଇ କାରେ, ତିଳେକ ନୁହଇ ଜାଣି;
କିଏ କେତେବେଳେ ଆସି ଫେରେ, ମୁଁ ନପାରେ ଚିହ୍ନି ।

ସ୍ୱର ଦୃଶ୍ୟ ନିମିଷେକ, ପଡ଼ୋଶୀ ବିପଞ୍ଚୀସ୍ୱନ,
ଭୂନ ଦୃଶ୍ୟ ଝପଣୀର ବାଳୁତ ଅମୃତ ତାନ,
ବନ ଉରବର ପଦା, ସରସୀ ସାଗର ନନ୍ଦ,
ପ୍ରଦୋଷ ପାଟଳ ନଭ, ପୂନଅ ନିଶୀଥ ମହୀ,—
କେତେ ମୁଁ କାହାକୁ ଆଜ ତିଳେ ନ ପାରଇ ଚିହ୍ନି,
ଯେତେ ଯେତେ ଆପଣାର, ମୋ ନିଜ ଆପଣା ଜାଣି ।

ଏ ମହା ଅଚିହ୍ନା ଗୋଟି ଜୀବନେ ଅଛି ଯେ ରତ୍ନ,
ପଲକର ପରିଚୟେ ମିଶି, ସଖା, ଗଲ ଚଳିଁ ।
ଏ ମଧୁ ସାୟାହ୍ନେ ଆଜ ହୃଦୟେ ହିଲ୍ଲୋଳ ଖେଳେ,
ତୁମ ସେ ବଦନ ସାଥ ଉଠଇ ଉଜ୍ଜ୍ୱଳ ଭାଳେ ।
ଅଚିହ୍ନାରୁ ଅଚିହ୍ନା ହେ, ତୁମ୍ଭ ଏ ଜୀବନେ ଆସି,
ସିନ୍ଧୁ ନଦୀ ଗିରିବନ ପଲ୍ଲବ କୁସୁମେ ମିଶି ।



# ମର୍ତ୍ତ୍ୟ ନାହିଁଛି ଏକା *

ଦୂର ପରବାସେ            ସ୍କୁଲ ଯିବେ ଭାଇ,
          ବରଜି କୁଟୀର ସୋହାଗ ଶିଶୁ;
ସେ ଲଗି ସଙ୍ଗରେ            ଆସିଛି ପିଲଟି,
          ଅଧବାଟେ ଦେବ ମେଲଣି ବୋଲି ।

ବନ ଝର କେତେ            ପାରି ହୋଇ ଆସି,
          ତରୁ ତଳେ ବସି ରହିଲେ ବେନି,
ସେହିଠାବେ ଯିବେ            ଦୁହେଁ ଦୁଇ ଆଡ଼େ,
          କେତେ ଯୁଗ ଲାଗି ମେଲଣି ଘେନି ।

"ଦେଖୁଛୁ ତ, ବାବୁ,            ବନ ଗିରି ଘୋଟି
          କି ଘୋର ବରଷା ଆସୁଛି ମାଡ଼ି,
ଯାଅ ତୁ ତୁରିତେ            କେତେ ବାଟ ଯିବୁ,
          ମୁଁ ତ ଏହିକ୍ଷଣି ଯିବଇଁ ସ୍କୁଲ ।

---

* ରଣପୁର ଗଡ଼ଜାତ ରାଜ୍ୟ ଥିଲା, ଏବେ ପୁରୀ ଜିଲ୍ଲାର ଅନ୍ତର୍ଗତ ହୋଇଛି । ରଣପୁର, କବିଙ୍କ ଜନ୍ମସ୍ଥାନ ବାଣପୁରକୁ ଲାଗିଛି । ମଣିନାଗ ପାହାଡ଼ ତଳେ ରଣପୁର ଗଡ଼ । ମଦାଗ୍ନି ନଈ ରଣପୁର ଗଡ଼ ପାଖେ । ତାହା ଦୟା ନଦୀରେ ପଡ଼ି ଚିଲିକାକୁ ଯାଇଛି ।

ଶଲ୍ଲ ବଣ ବାଟେ ଦେଖି ଗୁହିଁ ଯିବୁ,
ନ ତିନ୍ତିବୁ ପାଣି, ଟେକିବୁ ଛତି,
ବସି ଉଠି କାହିଁ ଡେଳା ନ କରିବୁ,
କଲେ ଡେଳା ହୋଇ ଯିବରେ ଗତ !

ଭୋକ କଲେ ବାଟେ ଖାଇବୁ, ବାବୁରେ
ଶୋଷ କଲେ ପାଣି ପିଇବୁ ନିଜ,
ଦୁହେଁ ସିନା ଥିଲେ ହସି ଖେଳ ଆସି
ଏକା ତୁହି ବୁଲି ପାରିବୁ ଟି କି ?”

ନିଜ ପିନ୍ଧା ଖଣ୍ଡି ପାଲଟି ଭାଇଟି
ଭାଇରେ ବସନ ଦେଲା ପିନ୍ଧାଇ;
ବାଟେ ଶଲ୍ଲ ବନେ ମେଘ ବରଷିବ
ଦେଲା ଭାଇ ହାତେ ଛତିଟି ନେଇ ।

ନିଜ ବାଟ ଖର୍ଚ୍ଚ ଖେଣ୍ଟି ସେ କହିଲା,
ଦେଇ ଭାଇ ହାତେ କଉଡ଼ି ଗଣି,
“ଗାଆଁରୁ ଗାଆଁକୁ ଯହିଁ ଯାହା ମିଳେ
ଖଜା ପିଠା ମୁଆଁ ଖାଇବୁ କିଣି ।

ବୋଉକୁ କହିବୁ ଭାଇ ଗଲେ ସୁଖେ
ସାଥି ସାଙ୍ଗ ବାଟେ ମିଳିଲେ କେତେ;
ଖରା ବରଷାତ ନ ଥିଲା ଦେଖିଛୁ
ବାଟ ଶ୍ରମ ହୋଇ ନ ଥିବ ପ୍ରତେ ।

କନ୍ଦିବୁ ମୋ ଲାଗି ଖାଇବ ନାହିଁଟି,
କାନ୍ଦିଲେ, ବାବୁରେ, କରିବୁ ତୁନ୍;
ରାତି ହେଲେ ଯାଇ କୋଳେ ଶୋଉଥିବୁ
ବଞ୍ଛୁ ପସ୍ବ ସେ ଆମର ଧେନ ।

ଘରେ ଗଲେ ସୁଖେ ଖେଳିବୁ ବୁଲିବୁ
ମୋ କଥା ମନେ ତୁ ହେଜିବୁ ନାହିଁ,
ଯାଉଛି ସିନାରେ, ଥିଲି ଆଜ ବାବୁ,
ମାସେ ନୋହୁ ଫେରି ଆସିବି ମୁହିଁ ।

ମଲ୍ଲୀ ଗଛଟିରେ ଦେଉଥିବୁ ପାଣି,
'ଶୁଆଟିକି ଦୁଧ ଦେବୁ ରେ ନିତି;
ହେଳା ନ କରିବୁ ମୁଁ ଫେରି ଆସିଲେ
ଆଣିଥିବି ଭଲ ପଞ୍ଜୁରି ଗୋଟି ।

ଯାଆ ଏବେ ଯାଆ ଠିଆ ମୁଁ ହୋଇଛି,
ସେ ବାଙ୍କ ସଡ଼କେ ହେଲେ ତୁ ପାର,
ଆଉ ଯେବେ ତୋରେ ନ ଦେଖି ପାରିବି
ମୋ ବାଟେ, ବାବୁ ରେ ଯିବି ମୁଁ ଚାଲି ।"

ଗଲା ଝିଅ ପାଖୁ ଠିଆ ସେ ହୋଇଛି,
ଝିଅ ଲୁଚିଗଲା ସଡ଼କ ବାଙ୍କେ,
ପୋଛୁ ଟପ ଟପ ନୟନୁ ଲୋତକ,
ଧୀରେ ପାଦ ଚାଳି ଚାଲିଲା ଦୁଃଖେ ।

ବରଷା ବତାସି ମାଡ଼ ଯେ ଆସିଲା,
ଛତା ନାହିଁ ହାତେ ତିନ୍ତିଲା ତନୁ;
ସାହା ସାଥି ନାହିଁ, ଶୋକ ଯେ କରୁଛି,
ଭାଇ କଥା ଭୁଲି ନ ପାରେ ମନୁ ।

"ଏକାଠିରେ କେବେ ଗୁଡ଼ ତ ନ ଥିଲା
ସବୁ ନୋହିଥିଲୁ ବାହାର ଝଟେ,
ଏ ପାଣି-ପବନେ ଜଲ-ବଣ-ବାଟେ
ବୁଲୁଥିବୁ ବାବୁ, କି ଦିନମାନେ !

କାନ୍ଦିଲେ,'କାନ୍ଦନା' କଏ କହିବ ରେ,
ଲୁହ ପୋଛିଦେବ ଭୁନଟି କରି ?
ମାଆ ମଣିନାଗ, ମୋ ଦୁଃଖୀ ଭାଇରେ
ସବୁ ଶୁଭେ ଆଜ ନଅ ଗୋ ଗୁଳି ।"

ଏକାଠିରେ ବାଟେ ଭାଳ ଏତେ ମନେ
ମିଳିଲା ସଞ୍ଜେ ସେ ପ୍ରବାସ ବାସେ,
ମାଆ ଭାଇ, ବେକ ପରାଣ ସଙ୍ଗାନି
ମୁହଁଛି, ଏକାଠି ରହିବ ମାସେ ।

ମାସକ ଅନ୍ତରେ ଫେରିବ ଘରେ ସେ,
ଭାଇରେ ଦୋସର ଦେଖିବ ଯାଇ,
କେତେ କିବା ନେବ ଭଲ ଦ୍ରବ୍ୟ ବାଛି,
ପଞ୍ଜୁରି ତ ନେବ ଶୁଆଟି ପାଇଁ ।

ଖାଇଟି ତାର ଯେ                    ବାଟ ଝୁଲ ଏଣେ,
ଆସୁଛୁ ବରଷା ବତାସି ସଙ୍ଗ,
ଛତିଟି ଧରିଛୁ                    ହାତେ  ସେଦ୍ଧପଣ,
ତୁମେ ମାଡ ଥରେ ନ ଢଏ ଫେଇ ।

କଉଡ଼ି ମୁଠିଟି                    ଖୋସି ରଖିଅଛୁ
ଥୋକେ ଶୋଷେ ତାର ଜଳୁଛୁ ପେଟ,
ଗାଆଁରୁ ଗାଆଁକୁ                    ଖଜା ପିଠା କେତେ
ଦେଖେ, କିଣିବାକୁ ନ ଯାଏ ହାତ ।

ବସି ଉଠିଯାଏ                    ବଣ-ଝଲ-ଘାଟେ,
ସାହା ସାଥି ଜଣେ ନାହିଁଟି କେହି,
କେତେ ବାଟ ତାର                    ଯିବାକୁ ଅଛି ତ
ଅନ୍ଧାର ଘୋଟି ଯେ ଆସିଲା ମଥା ।

ସାଇଁ ସାଇଁ ବନ୍ଧ—                    ଆସିଲା ପବନ
ଟପ ଟପ ପାଣି ବରଷେ ଟାଣେ,
ବିଜୁଳି ଚମକ,                    ଘଡ଼ଘଡ଼ି ନାଦେ
ବଟେଜନ୍ତୁ ନାହିଁ ବୁଲନ୍ତି ବଣେ ।

କେତେ ବନ ଗିରି                    ପାରି ହେଲା ପିଲା,
ଘର କଥା ମନେ ହେଉଛି ଖାଲି,—
"ଏକାଠିରେ ମୁହିଁ                    ବୁଲି ଯେ ଅଇଲି
କେତେ ଆହା ନୋହୁଥିବେ ସେ ଘାର ।

ପରବାସେ ଯାଇ          କେଉଁ ଗଛ ମୂଳେ
ବସିଥିବେ ଦୁଃଖେ ମଥାଟି ପୋତି,
ଆହା ବୋଲିବାକୁ          କାହିଁ କେ ନ ଥିବ,
ଯାଇବ କପର ଏ କାଳ ରାତି ?"

ସେ କାଳ ରାତି ଯେ          ପାଉନାହିଁ ଛାର,
ବାଟ ବଣ କଟୁଛି ନୋହୁଛି ବାସ,
ଘନ ଘନ ବନ          ହେଉଛି ଅନ୍ଧାର,
ଯେତେ ଦୂର ସେତୁ ଯାଉଛି ଗ୍ଳଲ ।

ନଈ ବନ୍ଧୁଯାଏ          କଳ କଳ ନାଦେ
ପେଲନ୍ତେ କେତେ ପଥର କାଠ,
ଆଖି ବୁଜ ପିଲା          ପଡ଼ିଲା ଗ ଡେଇଁ
ଆରକୂଳେ ପରା ମିଳବ ବାଟ ।

ପରବାସେ ଘର          ଗଣୁଅଛି ଦନ
ମାସକ କଣ୍ଟେ ତ ପୂରିଲା ଆସି;
ସ୍ୱନ୍ତ ହେଲେ ତାକୁ          ନଦ ଯେ ନୋହୁଛି,
ଦନ ବେଳେ ଥିରେ ନପାରେ ବସି ।

କେତେ ନୂଆ ଦ୍ରବ୍ୟ          ବାନ୍ଧୁଛି ସଙ୍ଗତେ,
ପଞ୍ଜୁରିଟି ହାତେ ଅଛଇ ଧରି,
ସେତ୍ୱ ଜଳ-ବଣ-          ବାଟେ, ଗ୍ଳଲ ଯାଇ
ଚହ୍ନା ଗଛ ତଳ ହୋଇଲା ପାର ।

ଘରେ ଆସି ଦେଖେ ଶୁଆ ନାହିଁ ଆଉ,
ମଲ୍ଲୀ ଗଛ ଶୁଖି ହେଲଣି ଡାଢ଼,
'କାହିଁ ଭାଇ ମୋର ?' ପବୁର ବଅଲା,
କଥା ନାହିଁ ଆସେ ଭୁଣ୍ଡକୁ ଭାର ।

ମଣିନାଗ ଗିରି ତୋଳନ୍ତି ସେ ମଥା,
ମଦାଗ୍ନି ସୁଅର ନୋହିନ୍ତି ଊଣା',
ରଣପୁରେ ଅଛି .ମଲୁ ସେହିପର
ଭାଇଟି ତା ମର୍ତ୍ତ୍ୟେ ନାହିଁଟି ସିନା ।



# ପିକର ପରାଣ-ଗୀତି

ଗାଅ ଗାଅ, ପିକ, ବସି ଗଛଡାଳେ
ଗାଅ ତୋ ପରାଣ-ଗୀତ,
ବରଷକ ଅନ୍ତେ ଡାଳବେ ପୁଣିରେ
ତୋର ବିମୋହନ ପ୍ରୀତ ।
ପ୍ରତି ପଲକେ ତୁ ଗାଉଛୁ ଯେଭଳି
ପରତେ ହୁଅଇ ମୋତେ,
ଗାଇ ଗାଇ ପ୍ରାଣ ପୂହାଇ ଦେବାକୁ
ପେଷିଛି ବିଧି କି ତୋତେ ?
ବନୁ ବନ କେତେ ଶୁଣିଛୁ ଏ ଗୀତ
କରମ ବିରାମେ ବସି,
ସଞ୍ଜ ସକାଳେ ଟମା ପରାଣ-କୁହରେ
ଯାଅଇ ଦେଲେ ପରଶି ।

କି ଗାଉଛୁ ପିକ ଭୁହାଇ ଭୁହାଇ
ବିନେତ ବୁଝିଲି ନାହିଁ,
ଭୁହ୍ୱ କରେ ଗଡ଼ା ଗାଇବାକୁ,ମୁହିଁ
ଖାଲି ତା ଶୁଣିବା ପାଇଁ ?

ସ୍ୱପ୍ନରେ ମୁଁ ଯେବେ          ମୋ କଳ୍ପିତ ଗାଥା
ଫେରନ୍ତୁ ବସନ୍ତ ଦୂତ,
ପର ନିମିଷେ ତା          ଆନ ରୂପ ଧରେ,
ସ୍ୱପ୍ନରେ ଗାଉ ଛୁ ତ ।
ଭୃଙ୍ଗ ଗାଉଥାଉ          କ ଗୀତ ଅମର
ତରୁରୁ ତରୁକୁ ଉଡ଼ି,
ଦିଗେ ଦିଗେ ବ୍ୟାପି          ବ୍ୟୋମ ବସୁନ୍ଧରା
ଚହଟି ଯାଉଥାଏ ପୂରି ।
ବାଳକ ବାଳିକା          ଯୁବା ଯଉବନା
ଥବିର ପ୍ରଉଢ଼ ଜନ,
ଥିରେ କାନ ଡେରି          ରହନ୍ତ ପୁଲକେ
ଖୋଜନ୍ତ ଯେ ଥାଏ ତୋ ସ୍ୱନ ।

କ ମନ୍ତ୍ର ପଢ଼ନ୍ତୁ          ପିକ କାନେ କାନେ
କହୁ କ ଗୁପତ ବାଣୀ,
ଅବୁଝା ଆଳାପେ          ଏତେ ମଜ୍ଜି ବାରୁ
ହେଉଛୁ ମୁଁ ନ ପାରେ ଜାଣି ।
ସାରା ମଞ୍ଚେ ଏତେ          ଯା ଲାଗି ପରାଣେ
ଉପୁଜେ ପୀରତି ମାୟା,
ଏ ଜୀବନେ ମୋର          କଣିକାଏ ଯେବେ
ବୁଝନ୍ତି ତହିଁ ମୁଁ ଆହା !

ଗାଅ ଗାଅ, ପିକ, ତରୁ ଶାଖେ ଲୁଚି
ଗାଅ ତୋ ପଗ୍ୱଣ-ଗୀତି,
ବରଷକ ଅନ୍ତେ ଢାଳଦେ ପୁଣି ରେ
ତୋ ଚିର ସ୍ୱର୍ଗୀୟ ପ୍ରୀତି ।
ଜଳ କଳ-ତାନେ, ସମୀର ମର୍ମରେ,
ପାହାନ୍ତ ତପନ ତେଜେ,
ମିଶି ଯାଉ ଯାଇ ତୋ ଗୀତି ମାଧୁରୀ
ସୁବର୍ଣ୍ଣ ବାଲୁକା-ଶେଯେ ।
କୁହୁ କୁହୁ ରଡ଼ି, ବନର କୋଇଲି,
ତୋ ତାନ ପଞ୍ଚମ ଡେଇଁ,
ବନ୍ଧୁ ବାଟେ ଖେଳି ପଥ କଣଳସ୍ୱେ
ପରଶଲଭ୍ୟ ସେ ଦେହ ।
ସୁମନ ସୁବାସେ ପତ୍ର ଶ୍ୟାମ ବାସେ
ନିଭୃତ ନୀଡ଼େ ଲୁଚି,
ରେ ସରଗ ଦୂତ ! ଢାଳ ତୋ କାକଳି
ବୃଥା ନୋହୁ ପଛେ କଣ୍ଠ ।
ଗାଅ ଗାଅ, ପିକ, ବସି ତରୁକୁଞ୍ଜେ
ଗାଅ ତୋ ପଗ୍ୱଣ-ଗୀତି,
ବରଷକ ଅନ୍ତେ ଢାଳଦେ ପୁଣି ରେ
ତୋ ନିତ୍ୟ ମୋହନ ପ୍ରୀତି ।



# ଯାଆ ଲୋ ଭଗିନୀ *

ନିତି ନିତି ସେହ୍ନକଥା ପଚ୍ଛୁଛୁ ପୁଣି,
କି କହିବ, ଭଗିନି ଲୋ, ନ ପାରଇ ଜାଣି ?
ଅବିରଳ ଧାରେ ନେତ୍ରୁ ଛାଡୁଅଛୁ ବାରି;
ମଉନେ ରହୁଛୁ ବସି ହୃଦୟେ କି ଭାଳି ।
ଯତନେ ବସାଇ କୋଳେ ପାଳନ୍ତି ନିରତେ,
ସେନେହ ଆଦର ସଦା କରନ୍ତି ଯେ କେତେ,
ଭୁଲି ସେ ଜନନୀ ଆଜ ଯାଇଛନ୍ତି କାହିଁ;
ସେ ସୁଖ ସେନେହ ଏବେ ତିଳେ ଆଉ ନାହିଁ ।
ବୟସେ ବାଳୁତ ତୁ ଯେ ପାରିବୁ କି ବୁଝି,
କେବଣ ସାଇଜେ ଗଲେ ଏସବୁ ବରଜି ?

---

* କବିଙ୍କର ପିତାମାତା ସ୍ୱଳ୍ପଦିନ ଛଡ଼ାରେ ହଇଜା ରୋଗରେ ମରିଗଲେ । ଭଉଣୀଟି ସେତେବେଳେ ନିତାନ୍ତ ପିଲା ହୋଇଥିଲା । ସେ ମଧ୍ୟ ଦୁଇବର୍ଷ ପରେ ମରିଗଲା । ବାଣପୁର ଅଞ୍ଚଳରେ ଗାଆଁ ପାଖରେ ଜଙ୍ଗଲ ଥିବାରୁ ସାଧାରଣତଃ ଲୋକେ ଅନ୍ଧାରରେ ଘରୁ ,ଏକା ବାହାରନ୍ତି ନାହିଁ । ବାଘ ଗାଁ ଭିତରକୁ ଆସନ୍ତି, ସେଥି ଘରରେ ବସି ରହନ୍ତି । ହଇଜା ସମୟରେ ସନ୍ଧ୍ୟାବେଳକୁ ଲୋକଙ୍କର ତାଟି କବାଟ ପଡ଼ିଯାଏ । କେତେକ ଅଞ୍ଚଳରେ ବ୍ରାହ୍ମଣଘରେ ବାପାଙ୍କୁ 'ନନା' ଓ ମାଆଙ୍କୁ 'ବୋଉ' ବୋଲି ଡାକନ୍ତି । କବିଙ୍କ ଭଉଣୀ, ବୟସରେ ତାଙ୍କଠାରୁ ଆଠବର୍ଷ ସାନ ଥିଲା ।

ଏତେ ସୁଖ ସମ୍ପଦ ଯେ ଏ ଜନ କୁଟୀରେ,
କେମନ୍ତେ ମୂ ତୁଚ୍ଛ ଦେଇ ଚାଲିଗଲେ ଧୀରେ ?
ଚାରିଧନ ଥିଲୁ ଭବ ଲୀଳାଖେଳା ସାରି,
କେଉଁ ଦୂରଦେଶେ ନନା ଯାଇଥିଲେ ଚାଲି ।
ଛୋଟ ମୋର ନାଆଁ ଧରି ଅଧେ ବାଟ୍ ଯାଇ,
ସଞ୍ଜବେଳେ ଘରେ ଆଉ ଫେରିବେଟି ନାହିଁ ।
କିଏ ଆଣି କୋରା ଫେଣା ଖାକର କଦଳୀ,
ଆଉ ଘେନେ ଆଦରରେ ମୋ ହାତେ ଦେବ ଭରି ?
ନନା ବୋଲି ତାହା ପାଶେ ଛୁଡ଼ାଦେବା ଯାଇ,
କାହା କଥା ପଦକକୁ ରହିଥିବା ଚାହିଁ ?
ସବୁ ଆହା ନିମିଷକେ ହୃଦପୁ ଭସୋଶ,
କେଉଁଦୂରେ କାହିଁ ଆଜ ଯାଇଛନ୍ତି ଚାଲି ?

ଘେନେ ଦୁଇଧନ ନନା ନ ଆସିଲେ ଯହୁଁ,
ଚଗୁରିଲି ବାହୁଡ଼ି ସେ ନ ଆସିବେ ଆଉ ।
ବୋଉ କୋଳେ ଥାଇ ତହୁଁ ବସି ନିରଜନେ,
ଧନ ଦୁଇ କଟାଇଲ୍ ଏ କୁଟୀର କୋଣେ ।
ସେହୁ ପୁଣି ଯନ୍ତେ ପଟେ ତେଜି ଏ ସକଳ,
କେଉଁଦେଶେ ଚାଲି ଆହା ଗଲ ଚିର ଚିର ।
ଯେବଣ ଗାଇକେ ବେନ ଯାଇଛନ୍ତି ଚାଲି,
ସେଥୁ ଏ ମରତେ କେହି ଆସଇ କି ଫେରି ?
ବନ୍ଧି କର୍ଣ୍ଣା ଧନସତ ଶ୍ରୀକୃଷ୍ଣଙ୍କୁ ଟେମି ଲୁହି,
ତାଙ୍କୁହି ନସୁନୁ ବାଟ ସେହି କଥା କହି ?

ଯେତେ ଯେତେ ଗଳ୍ପକଥା ଦଅନ୍ତୁ ଢସୋର,
ଢଷଥେ ବାନ୍ଧୁନ ଆଜ ତୁଅନାହିଁ ଘୁଳ ।
ଯଛାଲେ ଏକଣି ରବ ବୁଝଯିବ ଖରେ,
ଅନ୍ଧକାର ଘୋଟିଯିବ ବାଟେ ଘାଟେ ଦରେ ।
ତା ପାଇଁ ତୁ ଯାଅ ଏବେ, ରଖ ଧାପ ଜାଳ,
କାଠ ଦାଣ୍ଡେ ଯାଇ ମୂର୍ତ୍ତି ଆଣିବ ସଜାଡ଼ି ।
ଭୂଷ୍ଟ ମୂର୍ଦ୍ଧି ମିଶ୍ଚ ଦୁହେଁ ସନ୍ଧ ବାଡ଼ି ଆପେ,
ସଞ୍ଜବେଳୁ ଖାଇଦେଇ ଶୋଇବା ମେଳାପେ ।
ବେଶି ହୋଇଗଲେ ରାତି, ମାଡ଼ିବଟି ଡର,
ବାଡ଼ଦ୍ୱାରେ ରାବଦେବେ ଢଲୁଅ କୁକୁର ।
ଗଛଡାଳେ ବସି ପେଚା ରାବ କଣ୍ଠ ସଣେ,
କେତେ ଡରକଥା ଆଣି ପକାଇବ ମନେ ।
ନିଶା ଗରଜନେ ଧରି କରାଳ ମୂରତି,
ଭୂତ ପ୍ରେତ ଆସି କେତେ ଢତରିବେ ଏଥି ।
ଯାଅ, ଲୋ ଭଗିନି, ତେଜ ସକଳ ଘଳେଣି,
ସେବ୍ଦକଥା ଆସି କର୍ଣ୍ଣ ପସୁରୁଛୁ ପୁଣି ?
ଯିବାର ସମ୍ଭବ ଯାହା ଯାଏ ଥରେ ହଜି,
ଏ ମରତେ କେ ପୁଣି ଲୋ ପାଏ ତାକୁ ଖୋଜ ?



# ଏକାକୀ

ବଢ଼ ବେଳ ତରୁ,     ପବଣ ପୁଲକେ
ଝସ୍ପ ବରଷାରେ ଋଦ୍ଧ,
ଏ ମହୀମଣ୍ଡଳ     ତରୁ ଲତା ମେଳେ
ଶ୍ୟାମଳ ସମ୍ପଦ ବଦ୍ଧ ।
ମଳା ପାଣିଟିକ     ପିଉଥାଅ ସୁଖେ,
ଧୀର ସମୀରଣେ ଖେଳ,
ଏନେ ଏ ଭୁବନ     ଅନନ୍ତ ଛପିନେ
କରିବ ସୋହାଗ କେଳ ।
ଏ ସୁଖେ ଆହା ସେ     ଭାଗୀ ହୋଇଥାନ୍ତା,
ଭୁଞ୍ଜି ଏ ସରଗ-ନଧି,
ଶୀତଳ ମଳୟେ     ଯାଉଥାନ୍ତା ତଳ
ବାମ ଯାହା ହେଲା ବିଧି ।

କେତେ ଯେ ଆଦରେ     ଲେଉଡ଼, ବନ୍ଧୁ, ମୋରେ
ଦେଖାଅ ମୋହନ ଶିଶ୍ବ,
ଗୋଟି ଗୋଟି ହୋଇ     ଡିନ ପାଦପ ଦେହେ
ମେଳେ କରୁଥାନ୍ତୁ କେଳ ।

ଗୋଟିକର ଆଶା ସେ ସୁଧା ଆସବ
ଶୂନ୍ୟ ଯେ ହୋଇଛି ଆଜ,
ଜଳ ସ୍ଥଳ ନଭ ଅନନ୍ତ ଜଗତେ
କାହିଁ ସେ ନ ମିଳେ ଖୋଜ ।
କ ମଧୁ ମେଳାପେ ରହି ଅବରତେ
ଏଥି ତିନ ସହଚର,
ବାନ୍ଧିତ ବସ୍ତୁସେ, ଏକ ଆନ ସାଥେ,
ଛଡାଛଡ ହେଲେ କର ।
ସେ ସୁଧା ବସ୍ତୁସୁ ପଲକ ମାତର
ଫେର କ ଆସିବ ଆଉ ?
ଏ ସୁଖ ସଙ୍ଗ ଯେ ଚେଳଗଲା ଏକ
ତାକୁ କେ ପାଇବ କାହୁଁ ?
ତୁମେ ବେନ ଏବେ ବଡ଼ିବ ନକର
ଏକ ଆନ ପାଶେ ରହି,
ଜଗତ ଅକ୍ଷୟ ଶିଖ ସଉରଭ
ଅଙ୍ଗ ଲତକାରେ ବହି ।
ଜୀବନେ ବେନ ସେ ବିଚ୍ଛେଦ ଯାତନା
ନତ କ ନହେବ ଘନ,—
ସେ ଯେଉଁ ଚଲୁଛି ଚେଳ ଏ ମେଳାପ
ଗଲା କେଉଁ ଦେଶେ ଗ୍ଲଲ ।
ସେ ଦୂର ସ୍ୱଭଳେ ଏକାକୀ ସଖୀ ସେ
ଅନନ୍ତ ବର୍ଷ ବିତାଳେ,
ଆପଣା ବଜନ ସ୍ମୃତି ତାଳ ଦେଇ
ରହିଥିବ ଅନୁକ୍ଷଣେ ।

ଦୂରେ ପାଶେ କବା　　　　ଅଛଇ ଅନ୍ତର
ଜଗତେ ଯେ ଯାର କଣା ?
ପରାଣେ ପରାଣ　　　　ସେନେହ ପୀରତି
ହୃଦେ ହୃଦ ବନ୍ଧା ସିନା ।
ଏଥିପାଇଁ କହାଁ　　　　ଭାବନା, ବନ୍ଧୁ ହେ,
ଏ ବୃଥା ନୟନ-ଧାର ?
ତୁମର ସମ୍ପଦେ　　　　ପୂରି ଯେ ରହିଛି
ଜଳ ସ୍ଥଳ ବଣୁସାର ।

# ଭାଇ

ମରଣେ ମୁଦିଛନ୍ତି ନୟନ ଯୁଗଳ
ଅନ୍ତିମ ତଳପେ ଶୋଇଛନ୍ତି ଭାଇ,
ସୋଦର-ବନିତା- ତନୟ ସେନେହେ
ପରଶୁ ନଠୁରେ ବସୋଇ ଦେଇ ।

କୁଟୀରୁ ଅନ୍ତର କରିନେଇ ଭସ
ଶ୍ମଶାନେ ଦେବେ ସେ ତା ତନୁ ଜାଳି,
ପ୍ରତିବାସୀ ଚିର ହୃଦ ବେଦନା ବେଣ
ନିରଦୟ ଚିତା ଅନଳେ-ଜ୍ୱାଳି ।

ତନୟ-ବନିତା- କରୁଣ ବିଳାପେ
ପୂରିଛନ୍ତି ଚାପିତ କୁଟୀର ସାର,
ନିତି ଯହିଁ ଖେଳେ ସ୍ନେହ ସୁଧା ହାସ;
ବହେ ଆଜ ଶୋକ ଲୋତକ ଧାର ।

ଭାଇଟି ମାରବେ ଠେଙ୍ଗା ହୋଇ ପାଶେ,
ଉଦାସେ କି ଅବା ଭାଳଇ ମନେ;
ଯୁଗଳ ଜୀବନେ କେବେ ତ କାନ୍ଦିଛି,
ଲୁହ ବିନ୍ଦୁ ଆଜ ନାହିଁ ନୟନେ ।

କରମେ ଧରମେ, ଶୟନେ ସପନେ
ଭାଇଟି ଏକା ଯେ ଧିଆନ ତାର;
ମୋହନ ନବେଶେ ବୁହାଇଛୁ ହୃଦେ
ସୋଦର ନସର୍ଗ ସେନେହ ଧାର ।

ଅଧିକୁ ଅଧିକ ବଢ଼ଇ ବଳାପ;
ଜଣୁ ଜଣେ ଶୋକେ କାନ୍ଦଇ ଆସି;
ଭାଇଟି ମାଇବେ ହୋଇଛୁ ଠିଆ ତ,
ବନ୍ଦୁ ବାରି ନେତ୍ରେ ନ ଉଠେ ଭାସି ।

ପ୍ରତିବାସୀ ଜନେ ଉଠାଇ ଶବଟି,
କୁଟୀରୁ ଅନ୍ତର କଲେକ ଚହୁଁ,
ଅଶ୍ରୁମାରେ ଗଳ ଚିନ୍ତି ଭାଇ-ତନୁ—
‘‘କା ଲଗି, ଭାଇ, ଏ କୁଟୀର ଆଜ ?’’



# ବକୁଳବନ

ତରୁଲତା-କୁଞ୍ଜେ      ତରୁଲତା କ ମୁଁ
ରହିଛି ନୀରବେ ବସି,
ପଦଗନ୍ଧ ଏ      ଗୀତ-ମଧୁଧାର
ଗୁଞ୍ଜରେ ପବଣେ ପଶି ।

ପଲ୍ଲବ ପରଶେ      ଆସି ସମୀରଣ
ଛୁଇଁ ଯାଏ ତରୁଲତା,
ଗୁଲଗଲ୍ପବେଳେ      କହିଯାଏ କେତେ
ହୃଦୟଗୁପତ-କଥା ।

ପଥ-ଲଣ୍ଠନାର      ଶ୍ୟାମଳ ସେନେହେ
ଢଳଇ କନକ ଫୁଲ,
ବିପିନ ସମ୍ପଦ      ବାଛୁ ଛନ୍ଦି କର
ସାର ବନ ଦେଖୁଁ ଠୂଳ ।

ତରୁ ଲତା-କୁଞ୍ଜେ      ବସିଛି ଧୀରେ ମୁଁ,
ଆନ ତରୁଲତା ପରି;
ତରୁଲତା ଅଙ୍ଗୁ      ପଡ଼ୁଛି ମୋ ଅଙ୍ଗେ
ମଞ୍ଜୁଳେ ସୁମନ ଝଡ଼ି ।

ଉଷା ବିମୋହନ ଘନକ ବିଛାନେ
ଏ କିବା ସରଗ ଶୋଭା,
ନିଶୀଥ-ସୁନ୍ଦରୀ ବଧୂ ହିମ ଗିରି
ଅନନ୍ତ ରଜତ ସ୍ତୂପା ।

ପୁନଅ ଯାମିନୀ ପୂର୍ଣ୍ଣ ନିଶାମଣି-
ବଦନ-ସମ୍ପଦେ ବଳି,
କୁଞ୍ଜ କୁଞ୍ଜେ ଆଭା ଏ ଶିଶୁସକଳ
କି ଭାବେ ଅଛନ୍ତି ଭରି !

ଫୁଲର କେଶରେ ଫୁଲ ରେଣୁ ହୋଇ
ନିମିଷେ ଯାଆନ୍ତି ମିଶି,
ଅଳିଦଳ ମଧୁ- ଗୁଞ୍ଜନେ ସରବେ
ଫୁଲେ ବିହରନ୍ତି ଆସି ।

ପଲ୍ଲବ ଉଢ଼ାଳେ ସୁଖେ ଗାଉଥିବା
ପିକ ପଞ୍ଚମକୁ ଜିଣି,
ଶିଶୁ-କଣ୍ଠ-ରୋଳେ ଭରି ସେ ଦିଅନ୍ତି
ଏ ରୁକ୍ଷ କାନନ ଭୂମି ।

ଏ ମଧୁ ମିଳନେ ଲଭେ ମୁଁ ତ ମୋର
ପରଣ ପରଶ ଧନ,
ଆନ ଦେଶେ କାହିଁ ପିଇ ମୁଁ ଜୀବନେ,
ଭେଟିବ ଏ ବକୁଳ ବନ ?

ଏ ଗୁରୁ ଆଶ୍ରମେ ଗୁରୁପାଠେଁ ମୁହିଁ
ସାଧିବ କରମ ମୁଦେ,
ବନ୍ଧିବ ଏ ଯେତେ ଜଣୁଁ ଜଣେ ଶିଷ୍ୟ
ପିଞ୍ଚର ସେନେହେ ହୃଦେ ।

ମାଗି ମୋ ମେଲଣି ଜୀବନ-ସାୟାହ୍ନେ
ମୁଦନ୍ତେ ମୁଁ ନେଇ ବେଦନ,
ଏ ଭୂମିର ମାଟି ମାଟିରେ ମିଶାଇ
ରଖିବ ମୋ ତନୁ ଯେନ ।

ମୂଳେ ସତ୍ତ୍ୱ ମୋର ମିଶି, ପେଶି ରସ
ସଞ୍ଚରିବ ଡାଳଚୟେ;
ତରୁ ଲତା ଅଙ୍ଗେ ଉଠିବ ପଲ୍ଲବ,
କଢ଼ି, ଫୁଲ, ଫଳଚୟେ ।



## ବିକଳକଣ୍ଠ କୋଇଲି *

ପ୍ରତୀଚୀ ଭୂଧର-ସ୍ଥଳେ ଉଚ୍ଚ ଉଚ୍ଚ ଉଚ୍ଚ,
ଜନକେ ସଖାଳ ବନ ବୃକ୍ଷ ଶ୍ୟାମ ଛବି ।
ଚତୁଷ୍ଟ ଚତୁଷ୍କୁ ଜଡ଼, ବିହଗ ନିକର
ଭସାଇ ଦିଗନ୍ତ ଏବା ଶେଷ କଣ୍ଠସ୍ୱର ।
କ୍ଷୁଦ୍ର କ୍ଷୁଦ୍ର ସବେ ଧୀରେ ବହଇ ତଟିନୀ,
କାନନ ଦିଗନ୍ତ ହୃଦ ପ୍ରୀତି ଗାଥା ଘେନ ।
ଏ ସ୍ୱନଳେ ସକଳରୁ ମଧୁର ଆତୁର
ଡାକେ ଡାକେ ପିକଛାନ ବନଦେଶ ପୂରି ।
କଣ୍ଠଧ୍ୱନି ଚେଣ ମୋର ତ୍ରିଦିବ ଅବନୀ,
ଏ ବସନ୍ତେ ପିକକଣ୍ଠ ନ ଥିଲି ମୁଁ ଶୁଣି ।

* ସିଂହଭୂମ ଜିଲ୍ଲା ଚକ୍ରଧରପୁର ନିକଟରେ, ସଂଯୋଗ ନଦୀ କୂଳରେ 'କେରା' ଗ୍ରାମ । ଗ୍ରାମପଟେ କେତେଗୁଡ଼ିଏ ଆମ୍ବତୋଟା ଅଛି । କୋଇଲି ଚକ୍ରଧରପୁରରେ କ୍ୱଚିତ୍ ରବେ । କିନ୍ତୁ ତା ରବ କେରାରେ ଶୁଣାଯାଏ । କୋଇଲିକଣ୍ଠର ରବ ବିଷୟରେ କବିଙ୍କ ମତ, ସତ୍ୟବାଦୀ ତୁଳନାରେ, ବାଣପୁର ଅଧିକ 'ତ୍ରିଦିବ ଅବନୀ' । କାରଣ ବାଣପୁରରେ ସେ ବାଲ୍ୟଜୀବନ ଅତିପାତ କରିଥିଲେ ।

ନମିଷେ ଆଜ ଏ ତାରେ ପଡ଼ୁଛି ଚମକ —
କ ସ୍ୱରଜେ ଅଜାଣତେ ଉଷ୍ମ ମୂର୍ଚ୍ଛ ନକ !
କୁହୁସ୍ୱନେ ବନଦେଶ ଉଠଇ ଉଚ୍ଛୁଳ,
.ପ୍ରତି କୁହୁ ଆସେ, ପ୍ରତି ଗୈରକୁଞ୍ଜୁ ଫେର ।

ସକଳ କୋକିଳ ମେଳେ ନବସି ଉଡ଼ାଳେ,
କୋଇଲି ଏକଳକଣ୍ଠ ଗାଏ ଚୂତ ଡାଳେ ।
ଗାଇ ବନସାରା ସ୍ୱର ପଢ଼ୁଟି ଗଲଣି,
ଛେବେ ହେଲେ, ଲବେନାର୍ଦ୍ଧ ସେଧେ କଣ୍ଠବାଣୀ ।
ସ୍ୱତସାର ଅବସରେ ମାଜବ ସେ ସ୍ୱର,
ସ୍ଥାଚେ ପୁଣି ତାଳବାକୁ ପଞ୍ଚମ ହିଲ୍ଲୋଳ ।
ହେଉଲ, ଆଜ ଏ ସାପ୍ତାହ୍ନ ସମ୍ପଦ ଭଣ୍ଡାରେ
ଏକ କୁହୁ ତାନ ଏଣୁ ହସଇବ କାଳେ,
ସେ ଲାଗି ଏ କୋଇଲଟି ଚେଜ ହୃଦୁମାନ,
ଡାକୁଅଛି ଭକ୍ତଜାଳେ ତା ଢଳଳ ଚାନ ।
କାନନ-ସମ୍ପଦ ଲବେ କୋହୁଅଛି ଉଣା,
ଅଧିକୁ ଅଧିକ ବଢ଼ି ଗୀତ ସୁଖସୀମା ।

ଏକ୍ଷଣି ଅନ୍ଧକାରେ ଘୋଟିଯିବ ଧରା,
ଭଙ୍ଗାସ୍ୱର ଗଢ଼ିବାରେ ଲାଗିଯିବୁ ପରା ।
ଆଉ କେବେ ଧାରୁ ଏକ୍ଷେ ଗାଇଥା, କୋଇଲି,
ପିକ କୁହୁ ପାରବାରେ ଡେଉଁଟି ତୋ ଡାଳି ।
ଲେଢ଼ ଡାଳେ ଡାଳେ ଉଖ, ଚେଉ ବନ ଲତିକା,
ରଜେ ରଜେ ଭର, ଫୁଲ-ସୁରଭି-କଣିକା ।

ଦୂରୁ ଦୂରେ କଳ୍ପନାଅ, ସଂଯୋଗ ସକାଳ,
କାଳସ୍ରୋତେ ମିଶାଇ ଏ ଅର୍ଦ୍ଧ କୁହୁ ସ୍ୱର ।
ଫଳ୍ଲି କେଉଁ ବଳଭୂତେ ବଡ଼ଦେଉଳ ଉଠେ,
ପୂରି ଚନ୍ଧଧରପୁର ଏ ଝଳକ ଗର୍ବେ ।
ଶୁଣିବେ ଅଫୁନେ ଯେତେ ଚଳ ପଡ଼ା ଜନ,
ଆକସ୍ମିକ ଧନେ ଧନ୍ୟ କରିବେ ଜୀବନ ।
ଝଙ୍କୃତେ ନଘ ସମ୍ପଦ ସମ୍ପାଦିତ୍ରି ଝଧି,
ଝଣ୍ଟୁ ପ୍ରତିଶ୍ରୁତେ ଦେବ ମିଳାଇ ସେ ନିଧି ।



## ସଖା *

ଏହି ଯେ ନିକୁଞ୍ଜ ତଳ ମୃଦୁ ଗୁଳ୍ମ ପରଶେ,
ନମିତ ମଞ୍ଜନ ଭୃଙ୍ଗ ଖେଳ ଉଠ ନିମେଷେ ।
ପାଦପ-ସରସ-ଶାଖେ ବସି ସୁଖେ କୋଇଲି,
ଅଦେହ ଅମୃତ-ଧାର ବନେ ଢାଳଇ ତା'ଳି ।
ରଙ୍ଗ ରଙ୍ଗ ରଙ୍ଗ ବେଳେ ଦୂର କାନନ ଛବି,
ତଳଇ କାନନ କବା ଶ୍ୟାମ ଶ୍ରୀଅଙ୍ଗେ ଲଭି ।
ଗୋଟି ଗୋଟି ଡା'ଳୁ ଡାଳୁ ଫୁଲ ଦେଉଇ ଝଡ଼ି,
ସୁବର୍ଣ୍ଣ ଆସନେ ବନ ଦୁର୍ବା ଘରାନ କାଢ଼ି ।

ବହ, ରେ ସମୀର ଧୀର, ଆସ ଫୁଲର ବନ୍ଧୁ;
ଏ ଚନ୍ଦ୍ରିକା ପାଅ ପ୍ରୀତି ପରଶେ ଛୁଇଁ ।
ତଳଯାଜ ନମିତକ ସୁଖସାମ୍ରାଜ୍ୟ ଖେଳେ,
ଏ ସୁଧା ଶାଖାନ୍ତି ମୋର ସ୍ୱର୍ଣ୍ଣ ଜଳ୍ପନରେ ।

* ଗଞ୍ଜାମ ଜିଲ୍ଲା ଛତ୍ରପୁରରେ ରହୁଥିବା କବିଙ୍କର ଜଣେ ସଙ୍ଗୀ ସତ୍ୟବାଦୀ ଆସି ଫେରିଲା ପରେ ଏ ପଦ୍ୟ ଲେଖାହୋଇଛି । ଛତ୍ରପୁର ସମୁଦ୍ର କୂଳରେ । ମାତ୍ର ଦୁହିଁଙ୍କ ଭିତରେ ଗୋଟାଏ ବଡ଼ ଦହ ଅଛି । ଦହର ଏକ ପାଖରେ ଝାଉଁବଣ ଓ ଅନ୍ୟ ପାଖରେ କେତକୀବନ । ସେ କେତକୀବନରେ ସାପ ଥାନ୍ତି । ଦୁଇଟି ସାପ ବେଳେବେଳେ ପରସ୍ପର ସହିତ ଖେଳିବାର ଦେଖାଯାଏ । କେରାଣ୍ଡିମାଳ ପର୍ବତ ଛତ୍ରପୁରରୁ ଦଶ, ବାର କୋଶ ଦୂରରେ ।

ଦୁଇଟି କଅଁଳ କଳ ଭୋଳ ସେବନ ମୁଖେ,
ଆନ ଦୁଇ ବଣଲସ୍ମ ଆଜ ଖେଳାଏ ସୁଖେ ।

କାହିଁ ଗଲ ? ଆଜ କେଉଁ ଦୂର ଶଇଳେ ରହି,
ଏ ସୁଧା ସମ୍ପଦ, ସଖା, କାରେ ଦେଇଲ ନାହିଁ !
ସେନେହ ସଙ୍କୋଚଭରେ ଧୀରେ ବଢ଼ାଇ କର,
ପରଶିଲ ନାହିଁ ଅଙ୍ଗ ଡାଳପତ୍ରଫୁଲ ।
କୁସୁମ-ପରାଗ ଭୁଲେ ଢାଳ ନୟନବାଣ,
ନିମିଷେ ଦେଖିଲ ନାହିଁ ଏହି ନିସର୍ଗ ଶିଶୁ ।
ଅଧର ଅଧରେ ସୁଖେ ବାଣୀ ବଦନୁ ଫେଇ !
ଏ କୁଞ୍ଜ ସହିତେ ପଦେ କଥା ହେଲ ଯେ ନାହିଁ ।
କେତେ ଦେନା ଦେନ ଆହା ବନ ବିଜନେ ବସି,
ଦୁଇଟି ପରାଣୀ ସେ ଯେ ସୁଖ ସୋହାଗେ ହସି ।
ଆଜ ଜଣେ କେତେ ଦୂରେ; ଆନ ଶଇଳେ କାହିଁ;
ଏ ବନ ନଗମେ ଏକା ମୁହିଁ ଅଛଇ ରହିଁ ।
ରହ ରହ, ସଖା, ସୁଖେ, ଯହିଁ ଯାଇଛ ଚଳି,
ଯୁଗଳ ହିଦବ ମେଳେ ହୃଦ ତରଙ୍ଗ ତାଳ
ସାଗର ସୈକତ ପୁଷ୍ପ ପ୍ରୀତି କରମବାସେ
ସକାଳ ସାୟାହ୍ନ ନିତି ଯାପ ପରାଣ ହାସେ ।
ବାଞ୍ଛିତ ସମ୍ପଦ ଯେତେ ଦେଇ ହରଷଭରେ,
ସୁଖ ଶିଶୁ ଭୁଞ୍ଜୁଥାଅ ସ୍ୱର୍ଗ କନକପୁରେ ।
ଲକ୍ଷାକୋଳେ ହେମ ସ୍ୱର୍ଗେ ଉଇଁ ନଜଠୁ ରଙ୍କ,
ଦେନୁ ଥାଅ ଯାଇ ନିତି ନିତ୍ୟ ମୋହନ ଛବି ।

ଉରଗ ଯୁଗଳ କେଳି ହେରି କେତକୀମାଳେ,
ମିଳୁଥାଅ ଭବ ତାପେ ଘର୍ମ ସରସୀଣରେ,
ନଭକା ବନ୍ଧୁନେ ଆଶା ତେଜ ହେବାର ପାର,
ଅତୃପ୍ତ ତୃପତେ ଜଳ ଆସ ମଜ୍ଜନେ ଫେରି;
ବୁଲି ବୁଲି ପଛେ ଶ୍ୟାମ ଝାଉଁବନେ ଉଡ଼ାଳେ,
ଲୁହ ଥାଅ ଦୂରେ ନୀଳ ମହୋଦଧି ଗାରେ,
ସୁନୀଳ ସମ୍ପଦେ ଖେଳ ଲୁଣ୍ଠ ତରଙ୍ଗବେଣୀ,
ଗାର ସଇକେତେ ନଭ ଯାଉଥିବ ସେ ପୁଣି,
ମୃଦୁଳ ମଳୟେ ମଧୁ ସିନ୍ଧୁ ସମୀର ବାରି,
ବନ୍ଧୁବାର ଅସତନେ ହୃଷ୍ଟ ହୃଦୟେ ଭରି,
ତେଜ ଥରେ ଅନ୍ତରୁ ହେ ଶ୍ରମନିଶ୍ୱାସ-ଧାର,
ଗାଉଥାଅ ପଞ୍ଚତୋଷେ,—'ଆଜ ନୋହିଲ ପର';
ଗଚ୍ଛ ଗୁଲ୍ମତଳେ ବସି, ଅଙ୍ଗୁ ଶୁଖାଇ ଟିକି,
ଆନ ଚଦକ୍ଷେପେ ପୁଣି ଯାଇ କୁଟୀରେ ମିଳ ।
କରମ୍ଭ ବସନ ଲଭି କେବେ ଧନେକ ଯାଇ,
ଶ୍ୟାମଳ କେୟାଣ୍ଡିମାଳେ ବୁଲ ହରଷେ ଗାଇ ।
ସେ ଏକ ସରଗଣିସ ଦୁର ରଇଜେ ସେଥି,
ଏ ଯେ ପୁଣି ଆନ ଭୂଇଁ ସମ ସମ୍ପଦେ ଏଥି ।

ଭଦ୍ର, ରେ ନିକୁଞ୍ଜ ଶାଖା ପଡ଼ କୁସୁମପନ୍ତ,
ଯାଉଛୁ ମେଲାଣି ନେଇ; ହେ ଇ ଆସଇ ଗନ୍ତ ।
ଏ ସମ୍ପଦ ନନ୍ତ ନନ୍ତ ପୁଞ୍ଜି ଏ ଭାବେ ଥାଉ;
ଲଭ ବୁଡ଼ିଯାଇ ନଭେ, ଶୀତ ସମୀର ବନ୍ଧୁ ।
ସଖାଙ୍କ ଯୁଗଳ ହୃଦ, ଦୂର ଉପାନ୍ତ ଭରି,
ସ୍ୱଦେଶେ କି ଏ ବିଦେଶ ନିଧି ଦେବ ବିଯୋର !

# ଏହି କଥାଟିକ

ବୃକ୍ଷେ ବସି ଗାଉଥିଲା ଏକାକୀ କୁଆଟି,
ଘନ ଘନ ଡାକେ କଣ୍ଠ ଯିବ କି ତା ଫାଟି !
ବାଜୁଛି ହୃଦୟ ଶିଶୁ ବାଡ଼ି ଅପଘାତେ,
ଅଧର ଅମୃତ ହାସ ସଜାଡ଼ି ବଦନେ,
ଏବେ ଆନେ ଲେଡ଼ି ଟିକ ଉଦାସ ପସୂରେ,
ବୃନ୍ଦଗଳେ କେତେ ପିକ ସେଦ୍ଧି ଗୂଳ ଛଳେ ।
ହଜାଇ ନାହାନ୍ତି କନ୍ଥି କନକ ପ୍ରତିମା,
ତୁଇଁ ନାହିଁ ଦେନେ ହୃଦ ବିଚ୍ଛେଦ-ଯାତନା,
ସକଳ ସମ୍ପଦ ପ୍ରାଣେ ରଖିଛନ୍ତି ଭରି,
କବା ଏ ଜଗତେ ତୁମେ ଲେଡ଼ିବେ ଆତୁର ?

ମୁହିଁ, ଏ ବୟସେ ମୋର ବାଳୁତ ସରସେ,
ଗୁହଳ ମୂର୍ତ୍ତିଏ ନେଇ ଥୋଇଲି ତା ଆଗେ ।

ବାରେ ହେଲେ ମୁଖେ ଶେଷ ନଗର ପରଶି,
ଯେତେ ମୁଁ ଆଦରେ ତାକୁ ଝୋଳଉଲଇଁ ବସି—
"ଆ ଆ ଆ ଆ, କୁଆଟିରେ, ଖାଇଯାଅ ବାଟରେ,
ମନ ତୋଷେ ବସି ପୁଣି ଶୁଣୁଥିବୁ ଗୀତେ।
କିଏ କେତେ ଦୂରେ ମୋର ବାଟ ଚାହିଁ କାହିଁ
ଆସୁଛନ୍ତି, କହୁଥିବୁ ଭୁହାଇ ଭୁହାଇ।"

ଆହା!, କମା ସେସବୁ କଥ ମନେ ମୋର ପୁଣି,
ତୋ ପାଖେ ଆବର କପାଁ ସେସବୁ ମୋ ମାଗୁଣି ?
ନିତ ନିତ ସେସବୁ କଥା ହେଉଅଛୁ ଭୁଲ,
ମନର ବେଦନା ମନେ ରହୁଅଛୁ ମାତ୍ର ?
ଯେଉଁ ମୁଁ ଯାହାକୁ ଦିନେ ଦେଇଛୁ ମେଲାଣି,
ଯାଚି କି ଜୀବନେ କେବେ ଦେଇଯିବ ଆଣି ?
ନିଜ ହାତେ ଚିତାନଳ ସଜାଇ ଯତନେ,
ଗୋଟି ଗୋଟି ଜାଳି ଆହା ଦେଲି ଏ ଜୀବନେ।
ଜୀବନୁ ଅଧିକ କରି ଜୀବନ୍ତ ସେନେହେ;
କେତେମନ୍ତେ କେ ମୋତେନି ଧରିଲେ ହୃଦୟେ।
ଗଲାବେଳେ ନିମିଷକ ରଖିଲି ମୁଁ ନାହିଁ,
ଏବେ ଆଉ ହବାନଣି ଝୁରିବ କପାଇଁ ?
ଯିବାର ଯେତେକ ନିଧି ଗଲାଣି ତ ଚାଲି,
ଜୀବନେ ତା ଲାଗି ଆଉ ହେବ କପାଁ ଭୁଲି ?
ଅନନ୍ତ ଅପୂନ ପାରେ ସୁଦୂରୁ ସୁଦୂରେ,
ମରଣେ ହେବ ମୋ ଯେବେ ଭେଟ ଆଉଥରେ ?

"କହ କୁଆ କହୁଯାଅ ମିନତି ମୋ ଘେନ,
ଏକ ବୃନ୍ତେ ଥିଲ ଫୁଟି ସୂର୍ଯ୍ୟମୁଖୀ ବେନ;
ଗୋଟିଏ ସେ ଅବନତ ରହୁଅଛୁ କାହିଁ,
ପ୍ରାଚୀ ଦିଗନ୍ତେ ରବି ଉଠିବାର ପାଇଁ ।
ଆଉଟି ଯେ ଟେକାଇଛି ବଦନ ତା ଟାଣ,
ଦେଖୁଛି ତୃଷାରୀ ଶୂନ୍ୟ ବରସ ଆକାଶ;
ସେହୁ ପୁଣି ଫେରି ଦିନେ ଆସିବ କି ନାହିଁ,
ଯୁଗଳ ବଦନେ ରବି ଅନାଇବା ପାଇଁ ?
କହ କହ, କହୁ ଯାଅ ଏହୁ କଥାଟିକ,
ଖାଇ ଯାଅ, କୁଆ, ସୁଖେ ଚାଉଳମୁଠିକ ।



# ବିଦାୟ *

ବେଳର ଢେଲଣି ପଢ଼ର ଆଖର,
ଚପଳ ପ୍ରାନ୍ତର ବନ,
କୋମଳ କପାଳେ ଲାଟ ଥିବ ଖସ;
ବାଧିବଣି ପାଦଶ୍ରମ ।

---

* ସତ୍ୟବାଦୀ ବିଦ୍ୟାଳୟର ଅଧିକାଂଶ ଛାତ୍ର, ଅଭ୍ୟସ୍ତ ବାର୍ଷିକ ଭ୍ରମଣରେ ୧୯୧୭ ମସିହା ବସନ୍ତ ଋତୁରେ, ଖୋରଧାବାଟେ, ପଦବ୍ରଜରେ, ଖଣ୍ଡପଡ଼ା ପର୍ଯ୍ୟନ୍ତ ଯାଇଥିଲେ । ସେହି ବିଦ୍ୟାଳୟରେ ଜଣେ ପ୍ରଧାନ ଶିକ୍ଷକ ରହୁଥିଲେ ପୁଣି, 'ଆଚାର୍ଯ୍ୟ'ଙ୍କର ପ୍ରଧାନ କର୍ତ୍ତୃପକ୍ଷ ଥିଲେ । ତାହାଙ୍କୁ ହିଁ କୁଳପତି କୁହା-ଯାଉଥିଲା । ହରିହର ଦାସଙ୍କର ପ୍ରଚଳିତ 'ଆଚାର୍ଯ୍ୟ' ଉପାଧି ସେହିଥିରୁ ଆସିଛି ।

ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କୁ ସକାଳେ ନିଦରୁ ଉଠାଇବା ଲାଗି, ଛାତ୍ରାବାସରେ ଗୋଟିଏ ଘଣ୍ଟା ବାଜୁଥିଲା । ଛାତ୍ରମାନେ ଅନ୍ଧାରରେ ଏକା ଯିବା ଆସିବା କଲାବେଳେ ନିର୍ଜନତା ଦୂର କରିବା ନିମନ୍ତେ ଗୀତ ଗାଉଥିଲେ ।

ସତ୍ୟବାଦୀରୁ ପଦବ୍ରଜରେ ଖଣ୍ଡପଡ଼ା ଗଲେ, ଦୟାନଦୀ, ବରୁଣୀ ପାହାଡ଼, ଖୋରଧା, ବାଘମାରି ନିକଟସ୍ଥ ହଟକେଶ୍ୱର ଉଷ୍ଣ ପ୍ରସ୍ରବଣ ଆଦି ବାଟରେ ପଡ଼େ । ଦୟା ଓ ଭାର୍ଗବୀ ନଦୀ ଦୁଇଟି କୁଆଖାଇରୁ ବାହାରିଛି । ଭାର୍ଗବୀ ସତ୍ୟବାଦୀର ପାଖ । ବରୁଣୀ ପାହାଡ଼ ତଳେ ଖୋରଧାର ସ୍ୱାଧୀନ ରାଜାଙ୍କର ପ୍ରାଚୀନ ଗଡ଼ର ଭଗ୍ନାବଶେଷ ରହିଛି । ପାହାଡ଼ ଉପରେ ଗୋଟିଏ ଗୁମ୍ଫାର ନାମ ପାଣ୍ଡବଘର । ଭଣ୍ଡାରିକା ପାହାଡ଼ ଖଣ୍ଡପଡ଼ାରେ, ମହାନଦୀ କୂଳେ ଅଛି । ଭଣ୍ଡାରିକା ଦେବୀ-ମନ୍ଦିର ସେହି ପାହାଡ଼ରେ । ପାହାଡ଼ରେ ଗୋଟିଏ ଗୁମ୍ଫା ଅଛି । ସେହିଠାରେ ସାତ ଭଉଣୀ ହାଣ ଖାଉଥିବାର ପ୍ରବାଦ ଅଛି ।

ଖୁଜନାହିଁ, ବାବୁ, ନସ୍ଥିଲ ଆଉ ହେ,
ଅସରନ୍ତ ସେ ସରଣୀ,
ଚୂତ କୁଞ୍ଜ କାହିଁ ଅଶ୍ରେ ରହ ତର
ନିକୁଞ୍ଜ ସମ୍ଭୋଗ ହେନ ।

ପଶ୍ଚାତ ଏ ଯେ ଭର୍ଗସୀ ପ୍ରବାହ,
ତାହାର ସୋଦର ଟଗ,
ଦୟାର ସାଗର ସେ ଦୟା ଭୂତଳେ,
ବୁହାଇ ବିମଳ ଧାର ।

ଲକ୍ଷ ସେଥି, ବାବୁ, ଯାପି ଏ ମଧ୍ୟାହ୍ନ,
ଶରମ ତପୋର ମନୁ,
ମୁକୁଳ ସୁବାସ ଛାୟାତଳେ ଶୋଇ,
ଶୀତଳ କରନ୍ତ ତନୁ ।

ଚଳାଇ ଯାଇଛ କେତେଦୂରରେ ଏଥି,
ରହିଛ ବିଦେଶ ପଥେ;
ଜଡ଼ ମୁଁ ଯାଆନ୍ତି ଏବେ ଯଦି, ସଙ୍ଗେ
ନାହିଁ କି ନିଅନ୍ତ ସତେ ?

ଶିଶୁସୁଧା ଧାର ସଜାଡ଼ି ବପିଲେ,
ଜନକ ଚରଣେ ଭୁଲ,
ପିବାର ଅନାଇ ରହିଲ, ନୟନେ
ଶୁଖାଇ ନୟନ ବାରି ।

ଭୁଲପଣକୁ ଯେ ନେଇଛ ସଙ୍ଗରେ
ପିଅଲ ସେନେହେ ସେନ,
ଯାଣେ ସେ ଯାବତ ଥିବେ, ହେ ପବଣେ
କାହ କି ଦୁଃଖ ଗ୍ଲେଣି ?

ଗଳ୍ପବେଳେ ସେତୁ କହୁଲେ ଆବେଶେ
ଅଧର ଢଷାବ ହାସେ —
"ଦୁଇଦନ ଯାଇ, ଅଧ ଝସ୍ପନେ ହେ
ଭେଟିବ ସ୍ବବାସ ବାସେ ।"
'ନାହିଁ' ବୋଲିବାର ନବୋଧ୍ୟ ବଚନ
ସଙ୍କେତେ ସମ୍ମତ କହୁ,
ଫେରି ମୁଁ କୁଟୀରେ ଆସିଲି ଭୁଲିତେ,
ରତ୍ନଲି ସରଣୀ ଗୁହ୍ନି ।
ଏ ଯେ କ୍ଷୁଇଅନା ଚରୁଣ ନକୁଞ୍ଜ,
ତା ଘଚ୍ଛ ଜଠୁର ଶଥେ,
ମୋ ଦେହ ଖଲରେ ଲୁଚିଗଲି ଭ୍ରମ
ଗିରି ନଦୀ ଧାରେ ସତେ ।
କେତେ ଦୂରେ, ବାବୁ, ସାଙ୍ଗ ସାଥି ମେଳେ
କରୁଛନ୍ତି ବାଲୁତ ଲୀଳା,
ବାସନା-ନ୍ଦଶାନେ ଜାଳି ଚିତାନଳ,
ବସିଛି ଏଥି ମୁଁ ପର ।
ଅର୍ଦ୍ଧ ପଥେ ଯାଇ ଭେଟନ୍ତି ଯାହା ସେ
ଛେଳନ୍ତି ସୋହାଗ ମନୁ,
ନେହ-ମାଛ-ଧାର ବୃହାଇ ଝରତେ
ପାଷାଣ କରୁଛି ତନୁ ।
ଯାଅ, ବାବୁ, ଯାଅ ଏ ଘାନ ସ୍ମୃତିଟି
ଭସ୍ମୃତି-ଗର୍ଭରେ ଢାଳି,
ଦେଶୁ ଦେଶାନ୍ତରେ ଅନ୍ତର ପ୍ରବାହେ
ପିବ ହେ ଜୟରେ ଖେଳି ।

ବରୁଣୀ ଶିଖର          ଶଇଳ ବପିନେ
ସାୟାହ୍ନ ବହାରେ ଯାଇ,
ଅଶୋକ-ନିକୁଞ୍ଜେ          ନବସି ମୋ କଥା
ମନେ ପକାଇବ ନାହିଁ ।
ପାଣ୍ଡବ ନଗର          ପାଷାଣ ଛବରେ,
ପାଣ୍ଡବ ସୋଦରପଣେ,
ଗୁରୁ ଶିଷ୍ୟ ସଖା          ନମିତ୍ତେ ପରସ୍ପ
ନିକ୍ଷବ ହରଷ ମନେ ।
ବୀର ରକ୍ତେ ଗଢ଼ା          ଗଡ଼ ଅବଶେଷ
ମାଢ଼ ପ ବତଳେ ଖେଦେ,
ସ୍ୱଦେଶ ଅଙ୍ଗାର          କୀରତ ଗ ଥା ହେ
ସ୍ମରି ହେଉଥିବ ହୃଦେ ।

ମୁଁ କେତେ ବୁଲନ୍ତି          ହ୍ରଦ ନଦୀ ଘାଟରେ,
ପୁର ପଲ୍ଲୀ ଶୈଳ ବନେ;
ମୋ ଜନମ ଭୂଇଁ          ମୋହନ ଭରସେ
ବାନ୍ଧୁଛ ଉଦାସ ମନେ ।
ବନ ଫଳମୂଳେ          ଏଡ଼ି ସୁଖେ କ୍ଷୁଧା,
ପିଇଛି ଝରଣା ନୀର,
ତରୁ ତଳେ ଶୋଇ          ଦେଖିଛି ସପନ,
ଶିଳା ପୀଠେ ଥାପି ଶିର ।
ସୋଲଣ ଘନଲଣ          ଶ୍ୟାମଳଛ କାନ୍ତେ,
ଗିରି ଗଣ୍ଡଶିଳା ତଳେ,
କେଉଁ ଶିଳା, କେଉଁ          ଲତା ନିକୁଞ୍ଜଟି
ଅଛଇ ଅଜଣା ମୋରେ ?

ଶାନଆ ସୁବର୍ଣ୍ଣ ଶେଯେ କ ଅଛଇ
ଏକଇ ସିକତା ରେଣୁ,
ତା ସୁଧା ପ୍ରବାହେ ବନ୍ଧୁ ଏ ସଲିଳ
ନ ପରଶି ମୋର ତନୁ ?
ଆଜ ସିନା ଆସି ରହିଛି, ଏ ହୃଦ
ହଟେଣ ହରବେ ଢାଳ,
ମୋ ସ୍ୱଦେଶ ଶିଶୁ କଣିକା ମାତର
ପ୍ରାଣୁ କ ପାଶର ଭୁଲ !

ଦେଖି ଆସ, ବାବୁ, ଶିଶୁ ନୟନର
ସରଳ ସେନେହ ଧାରେ,
ପ୍ରତି ଘିର ବର ବନ ଚନ୍ଦ୍ରଲତା
ଲେଖି ହୃଦେ ସ୍ୱର୍ଣ୍ଣ ଗାରେ ।
ବନ୍ଧୁଣୀ ପ୍ରାନ୍ତର ରସାଳ ନକୁଞ୍ଜେ
ହଶ୍ରାମେ ପସ୍ୱଣ ନନ୍ଦ,
ବସିଥିଲ ବେଳେ, ଭେଟି ଯେ ଥାଆନ୍ତ—
ଏ ଭାଗ୍ୟେ ଘଟିଲ କାହିଁ ?
ଦୂରୁ ଦୂରେ ପୁଣି ଯାଅ, ବାବୁ, ଗୁଲ
ନବୀନ ପ୍ରବାସ ବାସେ,
ପ୍ରଭାତ ବଜଦ ଘ୍ରାପ୍ୟାନ୍ତଲେ, କବା
ରବ ଅପବନ୍ଧ ହାସେ ।
ଝରଣା ସଲିଳେ ଅବଗାହି ତନୁ
ତମ୍ପତ ହଟକେଶ୍ୱରେ,
ଜଳାର୍ଦ୍ର ବସନେ ଏଡ଼ ନେପଥ୍ୟ ଖଗ,
ଫେରୁଥିବ ବଲ ମାନେ;

ଜନ ପଥେ ହାଟ   ଧସ୍ତ ଧରି ହୋଇ
ସୁଖେ ସ୍ବଳ୍ପଥିବ ଯନ୍ତ୍ରଁ,
ଅଜ୍ଞାତ ଜୀବନେ   ଯେତେ ଯା ଘଟିଛି
ଏକେ ଆନେ ସବୁ କନ୍ଧ;
ବନସ୍ତର ବାଘ   ଭାଲୁ ସଙ୍ଗେ କାଣ୍ଡି
କଏ ଭେଟିଅଛି କେବେ,
କଏ କେତେବେଳେ   ଏଡ଼ିଛି ଆପଦ
କ ଭାବେ କେବଣ ଠାବେ;
ମହାନଦୀ ସୁର୍ଣ୍ଣି   ସଇକତ ଶେଯେ
ପୁଲକେ ପିବାର ଜଳ,
କ୍ଷୀଣ କଲେବରେ   ଟୈଷ ନଭ ଧାର
ସରଗ ଜାହ୍ନବୀ ବଳ;
ସେହ୍ନ ମାଭେ ଯେବେ   ପଖାଳ ପସୁର,
ସେନେହ ସଙ୍କୋଚ ଭୁରେ,
ଦେଖିବ ପୁଳନେ   ଦେବା ଉଚ୍ଚାରିକା
ସନ୍ଧ୍ୟ ଶଇଳ ଛଳେ;
ଶିଖରୁ ଶିଖରେ   ବୁଲିବ ଶଇଳେ,
ଖେଳାଇ ଶୈଶବ ଧାର,
ଶୁଣିବ ଗହ୍ବରୁ   ସପଟ ଦ୍ବଜଣୀ
ଖଷାଢ଼ ବଚନ ଭାସ;
ଏତେ ଏତେ ବେଳେ   ସକଳ ସମ୍ପଦେ
ସ୍ବଦେଶ ବହାରି ଭୂମେ,
ନମେଷେ ଏ ଦୁଃଖୀ   ସ୍ମୃତି ଗୋଟି, ବାବୁ,
ଆଣିବ ନାହିଁଟି ମନେ ।

ଯାହା ଲାଗି ଯାହା   ଖଣ୍ଡିଚ୍ଛି ବିଧାତା
ହୃଦୟ ଦହନ ଶିଖା,
ବିଶ୍ୱ ବଇଭବେ   ତା ଗୁପ୍ତ ସଂଯୋଗ
ଆସଇ କେବେ କ କଣ ?

କେବେ ଯେ ଆସିବ   ଏ ମଦା ବିଜନେ
ଏକାଟି ବସିଚ୍ଛି ଗୃହେଁ;
ମାଆ ଭଣ୍ଡାରିକା,   କରୁଣା ବନ୍ଧୁ ଗୋ,
ଆଣ ଶୁଭେ ବାହୁଡ଼ାଇ ।
ଛୁରଥନା କୁଞ୍ଜେ   ଫୁଟିବାର ଯେତେ
ଫୁଟନ୍ତି ସୁମନ ପନ୍ତି;
ବେଣି କଳିକା ସେ   ଆସିଲା ବେଳକୁ
ଡାଳେ ରହିଥାଉ ଗୁନ୍ତ ।
ଏ ସ୍ୱଚ୍ଛ ବିପିନ   ଅଭପି ଯେ ଘଟିବ
ମୋ କରେ ଅଜନ୍ତ୍ର ଯାଇ,
ତହୁଁ ତଳେ ପୁଣି   ନନ୍ଦନ କରି ମୁଁ
ସଞ୍ଚିତ ପାରିବ ନାହିଁ ।
ନଡ଼ାଳ, କୋଇଲି,   ଚନ୍ଦୁ ଡାଳେ ବସି
ଅମୃତ ସଙ୍ଗୀତ ଧାର,
ନକଦ, ସମୀର,   ନରୁଇ ବିପିନ;
ଲୁଚ; ରଙ୍ଗ ଚନ୍ଦ୍ର ତାଗ ।



## ବୈତରଣୀ ତୀରେ *

"କାହିଁ, ଲୋ ମାଉସି, ଏକା ଯାଇଥିଲୁ ଦୂରେ
କୁଟୀର ଦୁଆର ଢେଜ ? ଫେରୁଛୁ ଆତୁରେ ।
ପାଦେ ନାହିଁ ବଳ, ପଥ ଯିବା ପାଇଁ ଗ୍ଳାନି,
ମୁଣ୍ଡ ଭରା କାଠ ପଡ଼ ନପାରେ ସମ୍ଭାଳି ।
ଏ ଅଶ୍ରର କାଳେ ଗୁଣ୍ଡ କେ ଦେଲା ଗୋ ଭରୁ ?
କମ୍ପିଯାଉ ଦଣ୍ଡେ, ଗୁମ୍ପା ଡାକୁଛି ଚରୁ ।"

ଶୁଣି, ମୁଣ୍ଡ ଉଦ୍ଧାଇଲା ଟେକେଇଟି ବୁଢୀ,
ନଇଁ ଧୀରେ, ଥୋଇ ତଳେ, କାଢ଼ିଲା ଗୁଙ୍ଗୁଡ଼ି ।

---

* ଜୟନ୍ତୀ ଗଡ଼ ସିଂହଭୂମ ଜିଲ୍ଲାରେ, ବୈତରଣୀ ନଦୀ କୂଳରେ । ନଦୀର ଆରପାଖରେ କେନ୍ଦୁଝର ଜିଲ୍ଲାର ଚମ୍ପୁଆ । ଏ ପଦ୍ୟର ଘଟନା ସମୟରେ କବି ଜଣେ ସହକର୍ମୀଙ୍କ ସହିତ ୧୯୨୧ ମସିହାରେ ଚକ୍ରଧର ପୁରରୁ ଜୟନ୍ତୀଗଡ଼କୁ ଅସହଯୋଗ ପ୍ରଚାର କାର୍ଯ୍ୟରେ ଯାଇଥିଲେ । ଚକ୍ରଧର ପୁରକୁ ଜୟନ୍ତୀଗଡ଼ ଦକ୍ଷିଣ କୋଣ, ଯୋଜନକୁ ଚାରିକୋଶ ହିସାବରେ ପ୍ରାୟ ସାତ ଯୋଜନ । 'ସାତ' ସ୍ଥାନରେ କବି 'ଆଠ' ଲେଖିଛନ୍ତି । କବିଙ୍କ ପିତାମାତା ମରିଗଲା ପରେ, ତାଙ୍କ ଜେଜେମା ଚାରିବର୍ଷ ମନଦୁଃଖ ଓ ଅର୍ଥାଭାବରେ ବଞ୍ଚିଥିଲେ । କବି ସେ ସମୟରେ ପୁରୀ ଓ କଟକରେ ପଢ଼ୁଥିଲେ । ସେ ମାସିକ ଦଶଟଙ୍କା ଛାତ୍ରବୃତ୍ତିରୁ ନିଜ ପଢ଼ିବାଖର୍ଚ୍ଚ ଚଳାଇ, ଜେଜେମା, ଭଉଣୀ ଓ ପତ୍ନୀଙ୍କ ଖର୍ଚ୍ଚ ନିମନ୍ତେ ମାସକୁ ମାସ ତିନିଟଙ୍କା ପଠାଉଥିଲେ ।

ଶଗଜନା ରଣୁ ଫେଇ, ବାଢ଼ିଲା ସମ୍ଭାର—
ଗୁଜଳ ଏ ମୁଠେ କେତେ ଯତ୍ନେ ବନ୍ଧା ଡାର ।
କହିଲା, "ମାଗି,ରେ ବାବୁ, ସାତ ଦବସଟି
ଗାଉଁ ଗାଏଁ, ଅଣିଛି ମୁଁ ଏ ଗୁଜଳ ମୁଠେ ।
କଏ ଦେଲେ, କଏ ପୁଣି କଲା ହିନମାନ,
ପାଦେ ଗୁଲି ଥକବାର ସାର ହେଲା ଜାଣ ।
ଯମପୁରେ ନ କରନ୍ତୁ ପେଠ ଖନ୍ଦା ଲେଶେ,
ପ୍ରାଣପତି ପାଶେ ଶୋଇ ମଶାଣି ଯାଉଁଛେଶ ।
ଛୁଡ଼ି ଯେ ଅଛନ୍ତି ଯାଇ କୁନର ଦୁଲଣା,
ସଜରୁଣୀ ପେଟୁ ମୋର ପୁଅ ନଜରୁଣା ।
ଖାଇଥିଲେ ବାପା ମାଆ କେତେ ଧରି ସୁଖେ,
ପେଟୁ କାଟି ଘାଚ ଗୁଣ୍ଡା ଦେଉଥାନ୍ତେ ମୁଖେ ।
ବାଳୁତୁ ଉପାଦ ଅଛି, ନ ପାରଇ ଚଟି,
ସେ ଲଗି ମାଗି ମୁଁ ବୁଲେ, ନାହିଁ ଅନ୍ୟ ଗତି ।
ରନ୍ଧବାଢ଼ି ଦେଲେ, ଭୁଞ୍ଜି ବସିବ ସେ ଠାଏ,
କାଲେ, ଏ ପୋଡ଼ା ପେଟେ ଭରିବ ଗୁଣ୍ଡାଏ ।
କେତେ ହିନମାନେ ଅଛି ମୋ ଦୁଖପସରା,
ଭେଣ୍ଡା ହେଲା, ପିଲାପଣ ନ ଘାଜିଲା ପସ୍ର ।
କାଲି ଦେଇଅଛି ମାଡ଼, ଫୁଲିଅଛି ପିଠି;
ପୀଡ଼ା ଯୋଗେ ଦେହ ମୋର ହୁଏ କଟି କଟି ।
ମାଗିନାହିଁ ଆସିଥିଲେ କି ଭୁଞ୍ଜନ୍ତା ଧନ ?
କି ଦରବ ନେଉଛୁ ବା, ମାଗି ସାଙ୍ଗ ଧନ ?
ଦୁଧ ଘାଚ ଖାଆନ୍ତୁ ସେ ଥିଲା ଘର ପୁଏ
ମୋ ଧନମାଳରେ ପେଜ ନ ମିଳେ ଟୋପିଏ ।"

କନ୍ଧ ବୁଢ଼ୀ ଗଡ଼ାଇଲା ନେହ ବାନ୍ଧି ଧାର,
ହାତ ବାଡ଼ି ଭର ଦେଇ, ନଇଁ ହେଲା ଛୁଡ଼ା ।
ନେଡ଼ା ତା ନୋହିଲା ଆଜ କହିବାର ଲବେ,
ମଣ୍ଡନ୍ତୁ ବନ କ ଷିଲେ କଣ୍ଠଗ୍ରାସ ଭବେ ?
କାଢ଼ି ବନ୍ଧୁ କୋହ୍ନ ତରେ ଦୁଇଟି ପଇସା,
ଦେଲେ ଧାରେ ସଙ୍କୋଚେ ତ, ଦୟା ଚିତ୍ତେ ମିଶ
ଝଟେ ଉଲା ନେହସୁରେଁ ଲୁହ ବେନ ଝର,
ବଦନେ ବିଷାଦ ଶୋଭା ହେଲା ଢଳ ଢଳ ।

ଆଠଦିନ ସେ ହନୁ ମୋ ଗଲାଣିଟି ଛତ,
ଏ ଆଠ ଯୋଜନ ରାଜ୍ୟେ ବୁଲି ମୁଁ ଆସିଛି ।
ନେତ୍ରେ ନତ ଭ୍ରମେ ଚିତ୍ର ସାୟାହ୍ନ ବହାରେ,
ଜୟନ୍ତୀ ଗଡ଼େ ସେ ଦୂର ବୈତରଣୀ ତୀରେ ।
ନନ୍ଦ ବୈତରଣୀ ହୋଇ ଏକାନ୍ତ ବୁଡିଛି,
ଭିକ ମାଗି ବାସେ ଆସୁଥିବ ତା ନେଉଛି ।

ଭିକ ସିନା ମାଗି ନାହିଁ ଆଜି ଗାଏଁ ବୁଲି,
କେତେ ସ୍ୱଜନମାନେ ଧାନ୍ଦା ନଥିଲା ସେ ପଡ଼ି !
ପୁଷ୍ପ ବୋଝୁ, ଜଗ ହୃଦ ଅମୂଲ୍ୟ ପସରା,
ଡାକା ଡକ ହୋଇ ବୁଲି ଯାଇଥିଲେ ପର ।
କହୀର କୋଣକୁ ତାର କେଥିଲା ମୋ ହନେ ?
କେତେ ନଯାତନା ମୂର୍ତ୍ତି ଦେଇଥା ଜୀବନେ !
କାନେ ନାହିଁ ଶୁଣୁଇଛି 'ବୁଢ଼ୀମାଆ' ଡାକ,
ନାଡି ହୋଇ ହନେ ତାର ମାଡ଼ନାହିଁ ପାଖ ।

ତା ଶୂନ୍ୟ କୋଳଟି ଝନେ ନାହିଁ ମୁଁ ପୂରଇ,
କିଶୋର ବୟସ ଯାଏ ପ୍ରବାସେ କଟାଇ ।
ସେ ଯୋଗେ ପାଇଲି ଆଜି ଏଯ ବନ୍ଧୁ ଜୀବନେ,
କାହାର କି ଉପକାରେ ଲଗାଇବ ଝନେ ?
ଗଢ଼ିଛି ମୁଁ ଏ ପ୍ରାଣଟା ତା ସ୍ନେହ ସମ୍ଭାରେ,
ସ୍ୱଜନ ସେନେହେ ମଞ୍ଜେ ଶ୍ରେଷ୍ଠା କରି ତାରେ ।
ଏଣୁ ଅନଶନେ ଆହା ବୁଜନ୍ତି ସେ ଆଖି,
ନିଜ ପ୍ରତିରୂପ ପଟେ ଯାଉଅଛି ରଖି ।
ପାଉଅଛି ନେହ ଏବେ ଗୁରୁ ମାର ବନ୍ଦ,
ସେ ତ ଭବ ସନ୍ତରଣେ ମୋ ମହାସିନ୍ଧୁ ।
ଚୋ ବନେ ଏ ସୌଭାଗ୍ୟ ମୋ ମିଳନ୍ତା କି ଲବେ ?
ବଞ୍ଚଥା, ଜନ୍ମନୀ ବୁଢ଼ି, ବଞ୍ଚଥାଅ ଉବେ ।



# ଅଦେନ୍ଧୁ ଅମୃତ କେଳି

କେତେ କେତେ ଦିନ ଯାଇଛି, ରେ ପିକ,
ଗତ ଏ ଜୀବନେ ମୋର,
ନିମିଷକ ଲାଗି ଲୋଡ଼ ନାହିଁ ଏ ଯେ
ସୁଧାବାଣୀ ତୋ କଣ୍ଠର ।
ଶ୍ରାବଣ ଅସରା ଟପଂ ଟପ ଟପ
ତାଳଦଏ କାହିଁ ଆଣି,
ନଈ ଧାର ପୂର ବହି ଯାଉଥାଏ
ବରଷାର ବଢ଼ି ପାଣି ।
କୁଆଁର ପୁନେଇ ଜହ୍ନ ଆଲୁଅରେ
ମନ ସପନମାନେ ହସି,
କୁମାର କୁମାରୀ ପୁଆ ଖେଳେ ମାତି,
କଥା ହେଉଥାନ୍ତି ବସି ।
ବିଲମାନେ ଭରା ପାଟଳ ବସନେ
କନକ କେଦାର ଶିଷ,
ହସ ହସ ମୁଖେ କାଟି, ଚଷାପୁଅ
ରଖଇ ଯତନ କରି ।

ଶୀତ ସାୟାହ୍ନର ଚୂଲି ତଳପାଶେ
କୁଟୀର କୁସୁମ ପନ୍ତ—
ବୁଢ଼ୀ ମାଆ ଭୁଲେ ଖେଳନ୍ତି ପିଲାଏ,
ନାନା କଉତୁକେ ମାତି ।
ଯେତେ ଯେତେ ସୁଖ ଏଭଳି ଭୂତଳେ
ସରଗ ସମ୍ପଦ ଜିଣି,
ଢଳେ ଚନ୍ଦ୍ରିଁ, ପିକ, ଲୋଡ଼ ମୁଁ ନାହିଁରେ
ତୋର ଏ ମୋହନ ବାଣୀ ।

ଆଜି ଏବେ ବହେ ମୃଦୁଲ ମଳୟ
କି ଦୂର ବିଦେଶୁ ଆସି,
ଅବନୀ ଆକାଶେ ପୀୟୂଷ କମ୍ପନେ
ନବ ମଧୁ ପରକାଶି ।
ଡାଳୁ ଡାଳେ ଆଜି ବନ ଉପବନେ
ଶ୍ୟାମଳ ମୋହନ ବେଳ;
ନବୀନ ମାଧୁରୀ ଏ ଯେତେ ତରୁଣ
କିଶଳୟେ ଉଠେ ଖେଳ ।
ସୁମନେ ସୁମନେ ହୃଦ ନନ୍ଦନୟେ
ଉଚ୍ଛୁଳେ ସୋହାଗ ସୁଧା,
ଏକଇ ଏ ଖେଳ ପ୍ରସ୍ତ ଖେଳେ ଆଜି
ସରଗେ ମିଶେ ବସୁଧା ।

ଏ ସକଳ ମେଳେ          ନ ଖେଳିବ ଯେବେ
ତୋ କ୍ଷୁଦ୍ର ଚପଳା ଶିଶୁ;
ସରଗ ମରତ          ପୀୟୂଷ ସଙ୍ଗୀତେ
କି ତାନ ପିକରେ ଛୁଡ଼ୁ !
କେତେ କେତେ ଦିନ          ଯାଉଛି,ରେ ପିକ
ଦଢ଼ ଏ ଜୀବନ ମୋର,
ନିମିଷକ ଲାଗି          ଲୋଡ଼ ନାହିଁ ଏ ଯେ
ସୁଧାବାଣୀ ତୋ କଣ୍ଠର ।
ଡାଳ ଆଉ ଡାଳ,          କାନନ ଅନ୍ତଥି,
ଅଦେଖା ଅମୃତ କେଳି;
ଶୂନ୍ୟରୁ ଉଛୁଳି          ଶୂନ୍ୟ ଅନ୍ତସ୍ଥେ
ଯାଉ ଏ ଚଢ଼ିତ ଖେଳ । •



# ଡାକଲି

ଚହୁନ୍ତ ଚହୁକୁ ଉଡ଼ି ଏକାକୀ କୋଇଲି,
ବନ ଦେଶେ ଅବିରଳ ଢାଳଇ କାକଳି ।
ଉଚ୍ଛୁଳ ଉଠୁଛି ବନ ନିକୁଞ୍ଜ ସକଳ,
ମୃଦୁ କମ୍ପେ ଦୋହୁଅଛି ପତ୍ର ଫୁଲ ଫଳ ।
ନିକୁଞ୍ଜ ନିବାସୀ ମୋର ଜନକ ପ୍ରତିମା,
ସେବନ୍ତି ସେ ଶିଶୁଗଣ ଗୀତ ମଧୁରିମା ।

ଏସନ ସମୟେ ଦୁରନ୍ତରବ ଅପଚନେ,
କୁଆ ଦଳେ ଆସି ଖରେ ମିଳିଲେ କାନନେ ।
ଚଉପାଶେ ଘେରିଛନ୍ତି କୁଆ କୋଟି କୋଟି,
ତା ମଧ୍ୟେ ରବଇ ଧୀରେ ବସି କୋଇଲଟି ।
କୁଆ ରବେ ଅବହେଳେ ଯାଏ କାନ୍ଦି ଉଡ଼ି,
ଏକାକୀ ପାଦପ ଡାଳେ କୋକିଳ କାକଳି ।
ଏକ ମଧୁ ଗୀତ ନାଦ ଉଠଇ କାନନେ,
କୁଞ୍ଜୁ କୁଞ୍ଜେ ଥରିଯାଏ, ସୁମନ୍ଦ ସ୍ୱପନେ ।
ଧୀରେ ପଥେ ଖେଳି ଆସେ ମଳୟ ଲହରୀ,
ମଧୁର ପରଶେ ବନ ପୀୟୂଷ ବିତରି ।

ଗୁଣୁ ଗୁଣୁ ଗୁଣୁ ରବେ ଫୁଲୁ ଫୁଲେ ବସି,
ଫୁଲ ମଧୁପାୟୀ ଅଳି ଝଙ୍କରଇ ଆସି ।
ନମକ୍କନେ ଶିଶୁଗଣ ଶୁଣି କେତେ କ୍ଷଣ,
କୋଳାହଳେ କରତାଳ ଦଅନ୍ତି ବହନ ।
ଗଢ ନଭେ କୁଆ ଉଡ଼ି ଯାଆନ୍ତି ସକଳେ;
ତଥି ମଧ୍ୟେ ଉଡ଼େ ପିକ ବାରି ନୋହୁ ତଳେ ।
ଦୂରୁ ଦୂରେ ବନ ଦେଶେ ଉଠଇ ଉଚ୍ଛୁଳ—
କୁଆ କୋଇଲଙ୍କ ମିଶା ମୋହନ କାକଳ ।



## ଭଗ୍ନୀ *

ସେ ଯୁଗର କଥା ଆଜ ଅଛଇ କି ମନେ,
ଯେବେ ମୋ ଗହଣେ ବସି,
କର୍ମଚ ଅଧରେ ହସି,
କେତେ ଗାଉଥିଲୁ ଡଗ ଦଗ୍ରେଷ୍ଟି ବଚନେ ?
ମୁହିଁ ନ କହୁଣୁ କଣ୍ଠ;
ବାଜୁତ ସମ୍ପଦେ ନାଚ,
ତୋ ଗୀତ ପ୍ରଶଂସା ଆପେ କରୁଥିଲୁ ହେଲେ;
ସେ ସବୁ କି ମନେ ଆଜ ପଡ଼େ ବେଳେ ବେଳେ ?

ଘର କୋଣ ମୋତେ ଡାକଥିଲୁ ଦୁଇଜନ ।
ଥିଲୁ ଯେବେ ଏ ଧରାର,
କପାଁ କଲୁ ଆପଣାର;
ଅତୃପ୍ତ ବାସନା କପାଁ ରଖିଗଲୁ ପ୍ରାଣେ;
କପାଁ ଦେଲୁ ଏତେ ଦୁଃଖ ଏତେ ସନମାନେ ?

---

* କବିଙ୍କ ପିତାମାତାଙ୍କ ମୃତ୍ୟୁପରେ, ଭଉଣୀଟି ପ୍ରାୟ ଦୁଇବର୍ଷ କେତେ-ମାଙ୍କ ପାଖେ ରହି ମରିଗଲା । ସେତେବେଳେ ତାର ବୟସ ଦଶବର୍ଷ । ଉପଯୁକ୍ତ ଚିକିତ୍ସାର ଅଭାବରୁ ତାର ମୃତ୍ୟୁ ଘଟିଲା । ସେହି ବାଲ୍ୟ ବୟସରେ ଓ ଦୈନ୍ୟ ମଧ୍ୟରେ ସୁଦ୍ଧା, ସେ ରୂପ ଗୁଣରେ ଲୋକଙ୍କୁ ମୁଗ୍ଧ କରି ପାରିଥିଲା ।

ପଷାଣ ପ୍ରତିମା କରି ବନ୍ଦିଥିଲି ତୋରେ ।
ଭାବିଥିଲି, ତୋତେ କରି ଆଦରଣ,
ମୋ ଶୁଷ୍କ ଅନ୍ତର କରିବି ସରସ;
ଚନ୍ଦ୍ରାଇ ଦିଆ ମୋ ତୋ ଶିଶୁ ହସ୍ତାରେଁ
ଜଡ଼ିବି ବିକଶି ଏ ମର ସଂସାରେ ।
ସବୁ କଳ୍ପନା ମିଛ କରିଦେଇ ଅବହେଳେ,
କାହିଁ ଚାଲିଗଲୁ ଏକା,
ପଞ୍ଚଦଳ କୋଳୁ ନବ କୁସୁମ କଳିକା !

ଏତେ ମୂଲ୍ୟ ଯେବେ ତୋର ଥିଲା ଆମଦେଶେ,
କାହିଁ ପକାଇଲୁ ପାଦ ଏ ଦୀନ ଆବାସେ ?
ତୋ ନାମ ନଥିଲା ଯେବେ ଏ ମରତେ ଲେଖା,
କାହିଁ ଆସି ଜମିଷେ ତୁ ଦେଇଗଲୁ ଦେଖା ?

ଭୁଲି ଚାଲିଗଲୁ ତୋ ବାଇକେ;
ମୁହିଁ ତେବେ କାହିଁ ତୋତେ ନପାରଇ ଭୁଲି,
ଢାକା ନଥି ତୋ ଅଙ୍କେଦେ ମିଛେ ଦୁଏ ଧାର ?
କି ଯେତ୍ନେ ହଜିଛି ମୋର; ପାଇବାକୁ ଆଶା;
କ୍ଷଣେ ନାହିଁ ଲଭେ ପ୍ରାଣୁ ଅତୃପ୍ତ ପିପାସା ।
ଅନ୍ତର ତ ହୋଇଗଲୁ ନଜେ,
ସେ ସ୍ନେହ ଡୋରଟି କାହିଁ ନ ଦେଇ ଛିଣ୍ଡାଇ,
ଅନଳେ ଆହୁତି ତାଳି ହସୁଛୁ ଅନାଇଁ ?
ଏ ବିଶ୍ୱ ଜଗତେ ସ୍ଥାନ ନାହିଁଛି ମୋ ଆଜ ।
ମୋ ସଂପଦ ତୋହରି ସରବ,
ଶିଖିଛି ମୁଁ ତୋଠାରୁ ଲୋ ପ୍ରୀତି କି ଦରବ;

ସେ ପ୍ରୀତିର ଭୂଳ କନୁ ପାଏ ନାହିଁ ଖୋଜ ।
ତୋ ସବୁ ତ ଦେଖେ ମୁହିଁ କେତେ ପ୍ରିୟ ଜନେ,
ସେତୁ ଯାହା ନ ଦେଖନ୍ତି ମୋତେ ମୋ ସମାନେ;
କେତେ ଦୟାବନ୍ତ ପ୍ରୀତି ଢାଳନ୍ତି ମୋ ଜନେ,
ମନ ଅନୁରୂପେ କେହି ନ ଦଅନ୍ତି ଥରେ
ଏତେ ଅତୃପ୍ତ ପରାଣେ,
ପଡ଼ିଥିବ କପା ଏ ମୋ ବାସନା ଶ୍ମଶାନେ ?

ଚରଦନ ରହିବାକୁ ଆସିଚ ମୁଁ ନାହିଁ,
ଧନ ମାନ ଦେବା ସବୁ ଦୁରକୁ ପକାଇ ।
ନେଇଯାଅ ମୋତେ ଭଗ୍ନ ସେ ଘଇକେ,
ଯହିଁ ଯାଇଅଛୁ ନକେ ।
ତୋ ସବୁ ପ୍ରତିମା ଯେବେ ଯାଇଛି ପଳାଇ,
ମୁଁ ଏତେ ବଞ୍ଚେଦେ କପାଁ ରହିବ ଦ ଇନେ ?
କପାଁ ନ ପାଇଁଟେ ମରୁ ଏ ବଣ୍ଧ ତୋ ଵିନେ ?

ନେଇ ଯାଅ, ମାଆ ମୋର, ମୋତେ ତୋର ପାଶ;
ଏ ଭବ ଲୋଚନ ହାସ୍ୟ ଦୁଃଖ ଘିର୍ଘଶ୍ୱାସ,
ଯେତେ ବା ବଚନ, ଯେତେ ମାରବତା
କାହିଁ ତ ନବୁଝେ ମୋର ତପ୍ତ ଜୀବନତା ।
ଶୁଣାଅ ସେ ବାଣୀ ବାରେ,
ସେ ସେନେହ ଧାଗ୍ର ଢାଳିଦଅ ଢାଳେ;
ଏ ଶୁଷ୍କ ପରାଣ ମୋର ଶୋଷିବ ସ୍ୱମନେ,
ଭଗ୍ନୀ ଭୁ, ଭାଇ ମୁଁ ହେବା ଅନନ୍ତ ମିଳନେ ।



# ପିଅରୁ ଅଧିକ *

ଅଝର ଅଝର ପାଣି ବରଷେ ଅଧୀରେ,
ନଈ ନାଳ ବାଟ ଘାଟ ବାରି ନୁହେ ତିଳେ ।
ଘଡ଼ଘଡ଼ି ଚଡ଼ଚଡ଼ି ପଡ଼େ ଏକୁ ଆନ,
ବିଜୁଳି ଝଟକେ ଭୟେ କମ୍ପଇ ପରାଣ ।
କୋଣକ ଆସ୍ଥାନେ କାହିଁ ଢଳ ପଦା ବନେ,
ଜନ ପ୍ରାଣୀ ଜଣେ ନାହିଁ ଦିଶଇ ନୟନେ ।
ପିନ୍ଧାବାସ ତିନ୍ତି ସାରେ, ଥରେ ତନୁ ଶୀତେ,
କଳି କଳି ବାଆ ପାଣି ପିଠୁଛି ନରତେ ।
"କୋଲ ମାରିଯାଏ ଦେହ, ନଚଳେ ପୟର,
ଆଜି ନାହିଁ ଘୂଲ ବାଟେ ପାରିବ ନଜର ।"

---

* ଏ ପଦ୍ୟ ଚକ୍ରଧରପୁର ନିକଟରେ ଏକ କୋହ୍ଲ କୁଟୀର ପାଖ ଘଟଣା ଉପଲକ୍ଷେ ଲିଖିତ । କୋହ୍ଲମାନେ ଅନାର୍ଯ୍ୟ ଜାତି । ତାଙ୍କୁ କେହି କେହି 'ଚୂହାଡ଼' କହୁଥାନ୍ତି । ଚୂହାଡ଼ ଗୋଟାଏ ଅବଜ୍ଞାସୂଚକ ନାମ । ସେ ଘଟଣାରେ କବିଙ୍କ ସଙ୍ଗେ ତାଙ୍କର ଜଣେ ଯୁବକ ସହକର୍ମୀ ଯାଇଥିଲେ । ସେ ଅନେକ କାଳ କବିଙ୍କ ଘରେ ଘରର ପୁଅପରି ରହୁଥିଲେ ଓ ସକଳ ପ୍ରକାର ପୁତ୍ରସୁଲଭ ସ୍ନେହ, ଆଦର ପାଉଥିଲେ । ସେ ପ୍ରତିଦାନ ମଧ୍ୟ କରୁଥିଲେ ।

ଶୁଣି ଏ କାତର ବାଣୀ, କୁଟୀରୁ ବାହାରି,
ବାଆ ପାଣି ସୁଏ କଏ ଯାଉଛୁ ଏ ଥରି ।
ଓଦା ହୋଇଅଛୁ ଦେହେ ଶୁଖିଲା ବସନ,
ଚେବେ ଦମ୍ଭେ ପାଦ ଗ୍ଳାନ ଆସୁଛୁ ବଦନ ।
କହିଲି, "ଏ ଅନ୍ଧନକେ ଘୁଞ୍ଚ ଘରଦ୍ୱାର,
ବେହରଣେ କେବେ, ବାବୁ, ନୁହେ ଆସିବାର ।
ତନୁଁ ତହିଁ ସୁକୁମାର, ବାପା ମାଆ ଭାଇ
ଜାଇ କି ଏ କାଳେ ଘରୁ ଦଅନ୍ତେ ପଠାଇ ?
ଆସ, ବାବୁ, ବସ ଦଣ୍ଡେ ମୋ ପତ୍ର କୁଟୀରେ,
ବାଆ ପାଣି ଛାଡ଼ିଗଲେ ଫେରିଯିବ ଘରେ ।
ଘାଣ୍ଟି ହେଉଥିବେ ହିନା ଘରର ଘରଣୀ,
ଅଧିକେ କାନ୍ଦବେ ବାଟେ ଶତ୍ରୁବାର ଜାଣି ।
ଅନ୍ଧାର ନୋହୁଣୁ ରାତି, ମିଳିଲେ ବାହୁଡ଼ି,
ହସି ସେ ଉଆସ ରାଣୀ ନେବେ ସୁଖେ ଲେଉଡ଼ି ।
ଅଣ୍ଟିଳ କପାଳୁ ପାଦ ପୋଛୁବେ ଯତନେ,
ବାଡ଼ିବେ ଯା ଥିବେ ରାନ୍ଧ ସାସ୍ୱାଦୁ ଭୋଜନେ ।"

ଶ୍ରବଣେ ଆଦର ବାଣୀ, ପାଦ ହେଲା ଥିର,
ଦେଖିଲି, ସାଥିଟି ଶୀତେ ଥୁରୁ ଥୁରୁ ମୋର ।
ସତେ ନୋଲ ମାଝେ ଦେହ, ନ ପାରଇ ଚାଲି,
ଅଳପ ଲେତେଶ କି ବାବୁ କରିଥାନ୍ତା ଅଳି !
ସ୍ନେହେ କେ ମୁଁ କହିଲି, "ବସ, କଥା ଭାର ଯେନ,
ଦେଖ, ରହୁଛି ତ ନେଉ କୁଟୀର ବାସିନୀ ।"

କହନ୍ତି, "ଚୂହାଡ଼ କୂଳେ ଦେଖିଲେ ତା ଜନମ,
ଏତେ ଦ୍ୱନ୍ଦ୍ୱ କଷ୍ଟ ଖଣ୍ଡ ଗଢ଼ିଛି ଜୀବନ ।
ଏ ପାଣି ପବନେ କଥା ଏଡ଼ିଦେଇ ତ ର,
ଦେହନ୍ତି ଭୁଲିଗଲେ ବେଳ, ନ ଭଣିବ ଭଲ ।
ଇହ ଦଣ୍ଡେ ବସି ତାର କୁଟୀରେ ଆପଣ,
ଯିବ, ଘରେ ଛୁଡ଼ିଗଲେ ଏ ପାଣି ପବନ ।
ଜଳୁର ହେଲେଟି ଯେବେ ହୋଇଯିବ ଗତ,
ଅଲୁଅ ଅଣି ମୁଁ ବାଟେ ଆସିବ ସାଙ୍ଗୋଟି ।
ଘରେ ଏକା ବସି ବୋଝ ବାଟ ଥିବେ ଗୁହ୍ଣି,
ନସ୍ତନ ସେନେହ ଧାର ଭାଙ୍କରେ ଗଢ଼ାଇ ।
ଘଡ଼ଘଡ଼ ନାଦେ ପଡ଼ୁଥିବେ ଟି ଚମକି,
ଛଜୁଳ ଝଟକେ ବୁଜ ଦେଉଥିବେ ଆଖି ।
ପରାଣ ସଙ୍ଗୀନ ପୁଅ ପତି ବେକ ଜଳେ,
ଏ ଘୋର ବଳାସେ ଘେଷି ଦେଇଛନ୍ତି ବନେ ।
ପଲକେ କେସନେ ସୁଖେ ପାରିବେ କଟାଇ ?
ମିଳବ ଆବାସେ ଏବେ ଭୁରିତେ ମୁଁ ଯାଇ ।
ଦେଖି ମୋତେ ପିଣ୍ଡେ ଅଧେ ପଶିବ ଜୀବନ;
କହିବ, କୁଟୀରେ ଏଥି ବସିଛ ଆପଣ ।
ନୋହିଲେ, ଜୀବନ୍ତେ ବଳ ମରଣୁ ଅଧିକେ,
ଭଳିହେବେ ବୋଝ ପରା ଗ୍ରନ୍ଥି ବାଟ ଦୁଃଖେ ।"

କହି ଏତେ, ଗୃହ ପାଶୁ ଗଲା ଚଉତରେ,
ବାଆ ପାଣି ଅନ୍ଧକାରେ ଲୁଚିଗଲା ଶରେ ।
ଶୀତେ ଥୁ ରୁ ଥୁରୁ ବାଟେ ନୋହୁଥିବ କେତେ,
କେତେ ପାଣି ମୁଣ୍ଡେ ମେଘ ଢାଳୁଥିବ ସତେ ।

କପରିଟି ସନ୍ତୁଥିବ ସେ ପ୍ରାଣ ସଙ୍ଗାନ,
ଏତେ ସ୍ଥାନମାନେ ବାଟେ ଏକୁଟିଆ ଚାଲି ?
ଅନ୍ଧାରେ ମାଡ଼ଇ ଡର, ଚମକେ ପବନେ;
ଚାଲନ୍ତେ, ପଥରେ ଝିଣ୍ଟି ପଡ଼ଇ ଅସ୍ଥନେ ।
ବସ୍ତେ ବାନ୍ଧୁଛ; ନାହିଁ ଜାଣେ ସେ କଣ୍ଟିଛ,
ଦେହ ଧରି ସନ୍ଦେହ ଦେହୀ କି ଦୁଃଖ ଜଗତେ ।
ପୁଅ ନୋହୁ ପିଣ୍ଡରୁ ସେ କରନ୍ତୁ ଅଧିକ,
କି ଦ୍ରବ୍ୟେ ଗଢ଼ିଛି ନିଜ ମନ ହୃଦ ଟିକ ?
ଛାଡ଼ କୁଟୀର ସ୍ୱଜ ଉଆସ ସମ୍ଭାରେ,
ରଖି ମୋରେ, ଚାଲିଗଲ ! ବିଚ୍ଛେଦ ବିହରେ ।
କେତେବେଳେ ଯାଇ ପୁଣି ମିଳିବ ଆବାସେ,
ନେଇ ମାର ପୋଚ୍ଛି ବୋଉ ଲେଡ଼ନେବେ ହାସେ ।
ଶୁଣିବେ ମଜନେ ପଟ୍ଟ କୁଶଳ ବାରତା,
ସଙ୍କୋଚ ପୁଲକ ଭରେ ପୋଷ୍ଟ ଥିରେ ମଥା ।

ଗରଭ ଯାତନା ହନେ ନ ଭୋଗି, ପ୍ରେୟସି,
କି ପୁଅ ନିଧି ଏ ମଞ୍ଚେ ପାଇନାହଁ ହସି ?
ନ ହୁଅ ଅଥୟ, ନାହିଁ ତାଳ ଅଶ୍ରୁ ବାଟ;
ମୁଁ ଏଥି ନଷ୍ଟିନ୍ତେ ଅଛି, ନ ହୁଅ ଗୋ ଭୀନ ।
କୋହ୍ଳଣୀ ବୁଢ଼ୀର ଏ ଯେ ପଟର କୁଡ଼ିଆ,
କାଆ ପାଣି କୋପ ଲଂଘି ହୋଇଅଛି ଟେଆ,
ଏ ଘୋର ଆପଦେ ମୁଣ୍ଡ ଗୁଞ୍ଜି ଛଳେ ଛାର,
ଲଭିଛି ମୁଁ ସତେ ରତ୍ନ ସିଂହାସନ କାର ।
ମନୁଷ୍ୟ ଜନମ ପାଇ ଆପଦେ ଦୁର୍ଦ୍ଦିନେ,
ଧୈର୍ଯ୍ୟ ଯେ ହରାଏ ସେହୁ ଗଣାହୁଏ ହୀନେ ।

ସେଭଳି ଦୁର୍ବଳ ଦୀନ ହୀନ ଜନ ହାତ,
ବିବାହ ବେଦୀରେ ଧରିଥିଲକି ସଙ୍ଗାତ ?
ଚିହ୍ନିଥିବ ତେବେ ମୋର ଗୁଣ ଦୋଷମାନ,
ଯା ଥିଲି ତେବେ ମୁଁ, ଏବେ ରହିଛି ସମାନ ।
କାଳର ପରଶେ ମୁହିଁ ବଦଳି ତ ନାହିଁ,
ମିଛେ ଭୁଲ ହୁଅ ତେବେ ମୋ ଲାଗି କମ୍ପାଇ



# ବାଳକ

"ହସ, ରେ ବାଳକ ହସରେ ପୁଲକେ,
ଝଲାଅ ନୟନ ନମିଷେ,
ସରଗ ସମ୍ପଦ ଲେଡ଼ ଏ ମରତେ
ଆଣରେ ହୃଦୟୁ ହରଷେ;
ଗଗନ ଚନ୍ଦ୍ରିକା ମୋହନ ପ୍ରତିମା
ସମ୍ପାଦ ବଦନ ଅମୃତେ,
ଅଧର ଯୁଗଳ ଲଳିତ ବିଳାସେ
ଢାଳଦିଅ ସୁଧା ଭୁବନେ ।"

ମଉନେ ଅନାଇ ବସିଛୁ ପିଲାଟି,
ପରାଣ ପୁଲକେ ଉଚ୍ଛୁଳ,
ଲଜ୍ଜାରାଣୀ ହାସ କନକ କଣିକା
ନେବେ ତା ଯାଉଛୁ ବଦନ
ମନର ଧିଆନେ, ହୃଦ ପରସରେ
କଣ୍ଠୁଁ ତା ନଷ୍ଟର ବଚନ,
ନ ଅବା ପୁଚ୍ଛିବ ସେନେହ ସମ୍ଭାଷେ
ସରମେ ନ ହଲେ ପରାଣ ।

"ଯାଅ ଯାଅ ସୁଖେ ଆପଣା ଉଆସେ
ଭୁଲିଚେ, ବାଳକ, ବାହୁଡ଼ି,
ଶୂନ୍ୟ ସମୀରଣ ଶଶିତାରା କରେ
ଚରଣ ପରଶେ ବନ୍ଦର;
ମୋ ଦୀନ କୁଟୀରେ ନେଇ ନ ପାରିବ
ଦୁର୍ଲଭ ଏ ସ୍ୱର୍ଗ ରତନ,
କମିତେ କ ଭଳ ରଖିବ ସମ୍ଭାଳ
ଉଇଁଲା ବାଳୁତ ତପନ ?"

ମଉନେ ଅନାଇ ଝୁଲିଗଲା ଖରେ
ତା ମୃଦୁ ପଦ୍ମରେ ପିଲାଟି,
ଅବଶ ଗଗନ ଅନନ୍ତ ଅସ୍ୱନ
ଏକଇ ବରଣେ ବଣ୍ଡିତ ।
ଶୂନ୍ୟ ହୋଇ, ମୋର ପୂର ଯେ ଯାଉଛି
ଏ କବା ସମ୍ପଦେ କୁଟୀର,
ଯାଉଛି ବାଳକ, ଯାଉ ଏ ପରସ୍ପେ,
ଫେର ସେ ନ ଆସୁ ଆବର ।



# ଦାନ *

ଦୋକାନରେ ଭରିଅଛି ଚହଟି ସୁବାସେ,
ନାନା ବର୍ଣ୍ଣ ବଇଭବେ ପୂରି ଦୂରେ ପାଶେ ।
ଲାଗିଅଛି କିଣାବିକା ମହା କୋଳାହଳେ,
ଉଚ୍ଛୁଳେ ଦୋକାନୀ ହିଆ ଆନନ୍ଦ ଲହରେ ।
ଜଣୁ ଜଣେ କିଣି ସାରି ବାହୁଡ଼ନ୍ତି ହସି,
ମୂଲ କରୁଥାନ୍ତି ପୁଣି ଆନ ଜନେ ପଶି ।
ବରଷକେ ଥରେ ଏକେ ସଭଗର ଫଳ,
ଲଭି, ଆଜି କୋଟିନିଧି ନୋହିବ କାହାର ?

ବାଟ ଧୂଳି ଆସନେ ଯେ ଖଣ୍ଡିଦୂରେ ବସି,
କିଏ ପୁଚ୍ଛେ ମୃଦୁ ସ୍ୱରେ କେତେ ଭରସି—
ଧୂଳି ମାଟି ବୋଳି ହୋଇ ମଳିନ ବଦନ,
କଳା କନା ଦୁଇଖଣ୍ଡି ଯାଚିତ ବସନ,
ବାହୁ ଯୁଗଳେ ତା ନାହିଁ ପିଲଟିର ବଳ,

---

* ସତ୍ୟବାଦୀରେ ଦିନେ ଜଣେ ଦରିଦ୍ର ଲୋକ କଞ୍ଚା ଆମ୍ବ କିଣିବାର ଦେଖି ଜଣେ ଗ୍ରୁଦ ଚାରିପଇସାର ପାଚିଲା ଆମ୍ବ ତାକୁ ନେଇ ଦେଲେ । ସେ ତାହା ପାଇ ବିସ୍ମିତ ହୋଇଗଲା । ପଦ୍ୟଟିରେ ସେହି ଘଟନାକୁ ଲକ୍ଷ କରାଯାଇଅଛି । ସେ ଦାନ ଯୋଗେ ପୃଥିବୀ ଯେ କିପରି 'ଦାନ ସ୍ଥାନ' ହେଲା ବୋଲି କବିଙ୍କ ମନରେ ଧାରଣା ଜନ୍ମିଲା, ବୁଝିବା କଠିନ । ଦରିଦ୍ରକୁ ଏତେ ଅଳ୍ପକେ ଉକାଶ ସ୍ଥାନକୁ ନେଇଯିବା ବୋଧହୁଏ ତାଙ୍କ ଇପ୍ସିତ ନୁହେଁ ।

ବସ୍ତ୍ର ହୋଇବ ଅଙ୍ଗେ ଚିକ୍କଣ ଉପର;
“କେତେ ଗୋଟି ଆମ୍ବ ଦେଉଅଛ ପଇସାରେ ?”
“ଯୋଡ଼ିକ ପଇସା ତିନି”, ଶୁଣିଲା ଉତ୍ତରେ ।
ନିଜ ହାତେ ଥିବା ତାର ଅଧଲାଟି ଧରି,
ଦଣ୍ଡେ ସେହୁ ମନେ ମନେ କ ହେଲା ବିଧୁର ।
ମୁଖେ ତାର ଫୋଟିଗଲା ନୈରାଶ୍ୟ କାଳିମା,
ଟପିଗଲା ଲୁହ କୋହେ ନେତ୍ର ପତା ସୀମା ।

ପାଖ ଗଛ ଛାଇତଳେ ବସି ଏକା ବୁଢ଼ୀ,
ମଣ୍ଡନେ ପଣସ ତାର ରଖିଅଛି ବାଡ଼ି ।
ସେହିଠାରେ ଏବେ ଯାଇ ନେଇଅଛି କିଣି,
ସେ ଗଛ ତଳରେ ବୋଲା ଶ୍ୟାମକାନ୍ତ ଜଣି,
ଅଧଲାକୁ ଦୁଇଗୋଟି ସବ୍ରଗର ଫଳ,
ମାଗିଲାରୁ ଲଭ ପୁଣି ଗୋଟିଏ ଆବର ।
ଜୀବନେ ଅପୂର୍ବ ହସ ଆସଇ ବିରାଜ,
ସବ୍ରଗର ଫଳ ସେ ଯେ ନୂଆ ହେବ ଆଜ ।

“କି କଲ, କି କଲ, ବାବୁ; ତଳତରେ ଯାଇ,
ଏ ପାଚିଲା ଆମ୍ବ ତବ ଦେଲ ଯେ ବଢ଼ାଇ ?

ଜଗତ ଅନନ୍ତକାଳେ ଖୋଜେ ଯେ ପୀୟୂଷ,
ଦେଲ ତ ତୁଆଇଁ ତହିଁ ଏ ବିଷ ପରଶ ।
ସ୍ୱର ପଇସାର ଅମ୍ବ ଦେଲ ଏ ଯେ କାଣି,
ଧାନ ଧ୍ୟାନ ବୃଦ୍ଧ ଯୁଗ କଲ ଏ ମେନ୍ଦମା ।
ତ୍ରସ୍ତତା ମୁଖେ ଯେ ବ୍ରୈରଗ୍ନି ତଢ଼ଏ ଦେଖା,
ସେ ନୁହେଁ ପୁଲକ, ଅଟେ ବିଷାଦର ରେଖା ।

# ବିହଗ ପରାଣ ବେଦନା

"ଦେଖୁଛୁ ତ ଦୂରେ କନକ ନଗରୀ
ମାଣିକ୍ୟ ଭୂଷଣ ଭରା,
'ଆ-ଆ ଆ-ଆ ପିକ'- ଶୁଣୁଅଛୁ ନିତି
ସୋହାଗ ବଚନ ଧାରା ।
ଭୁଲି କି ତୁ ସତେ ପିଞ୍ଜରେ କେଳି,
ଏ ବନବଗାନ ଗୂଢ଼ ?
ଏ ଚଞ୍ଚୁ ଡାଳୁ ତୋ ନଦେବୁରେ ଆଜ
ଅଲକ୍ଷ୍ୟେ ଅମୃତ ଢାଳି ?
ମଣୁଛ ମରତେ ପାବତ ସମ୍ପଦ
ମୋର ଏ ଏକାଇ ତରୁ,
ଟେତଜ ଯା ଗହଳ ଜଙ୍ଗଲେ ବାରେ,
ଭେଟିବୁ ଶୋଷଣ ମନ୍ତ୍ର ?
ରହିଛି, ଦେଖରେ, ଫୁଲ-ଫଳ କେତେ
ପତ୍ର କଣ୍ଟକସ୍ତ ଢାଳେ,
ବଢ଼ୁଛି ଯା ବନେ ପ୍ରଭୃତି ଚତୁଳତା
ସେନେହ ସୋହାଗ ଘରେ ।

ରଖିଛୁ ତୋ ପାଇଁ ଲତିକା ନିକୁଞ୍ଜ
ସଜାଇ ମୋହନ ବେଶେ,
ନିଶି ଶଶି ଫୁଟ ପିୟୂଷେ ପଖାଳ,
ଅରୁଣ କନକ ଭାସେ ।
ବହୁଛି ସମୀର ମୃଦୁ ଆବର୍ତ୍ତନେ
ଖେଳାଇ କାନନ ଭୂମି;
ଦେଶେ ଦେଶେ ମଧୁ ଯାଉଛି ବହିର,
କୁସୁମ କେଶର ଘେନ ।
ବସୋର୍ ଯେ ମୋଦେ ନିଜ ବଇଭବ,
ଅପର ବିହଗ କେତେ,
ଶୁଆ ସାରି ପିକ, ଆସିବେ ଏଠାବେ
ବନ୍ଧୁଁ ବନେ ଛନ୍ଦ ଯେତେ ।
ଦୂର ମନ୍ଦାକିନୀ ପେଷିବ ନିକର
ସଲିଳ ବିମଳ ଧାରା;
ହିମାଚଳ ଶିରୁଁ ହିମ ଶୁଭ୍ର ଚୂଳ
ଓହ୍ଲାଇ ଆସିବ ପରା ।
ମହୋଦଧି ବକ୍ଷେ ଫେନିଳ ଲହରୀ
ଦେବ ତା ସଙ୍ଗୀତ ପେଷି,
କୁରଙ୍ଗ କେଶରୀ ସୋଦର ସୋହାଗେ
ସୁଖେ ବିହରିବେ ହସି ।
ଏତହୁଁ ବଳି କି ଅଛଇ ସମ୍ପଦ
କନକ ରଜତ ବାସେ,
ଯାହା ଲାଗି, ପିକ, ଖଡୁଛୁ ହୃଦେ ତୁ,
କରଜ ପିବୁ ସେ ଦେଶେ ?

ରହ ଏଥି ରହ, ବନର କୋଇଲି,
ପ୍ରୀତିକେ ପରାଣ ନନ୍ଦି;
ଏ ସବୁଜ ଆଢ଼ୁ ଅବନୀ ଆକାଶେ
ତୋ ଲାଗି ରଖିଛି ବନ୍ଧୁ ?"

"ଯାଇ ନାହିଁ ଯେବେ ଯିବାର ଥିଲା ମୋ
ମୁକତ ମୋହନ ପଥ;
ଏ ତରୁ ଶାଖାଟି ନେଡ଼ି ତ ଆସିଛୁ
ମୁଁ ଦୂର ଅପରିଚିତ ।
ହାତେ ଧରି ଯେବେ ସୁବର୍ଣ୍ଣ ପିଞ୍ଜର
ନୃପତି ତନୟ ମଣି ।
ରଖିଲେଁ ଆଦରେ, ଏଡ଼େ ସେ ସୋହାଗ,
ଆଶ୍ରିଛି ଏ ବନଭୂମି ।
ଏ ତରୁଟି ଘନେ ନଜାଣେ ଆନ ମୁଁ,
ନବସି ନରତେ ଏଥି,
ମନ୍ଦୁରୁ ମନ୍ଦୁ ସେ ହେଉ ବନ ଦେଶ,
ଘକଟ, ଘକଟ ଅତି ।
ନ ବହୁ ସମୀର, ଗୁଣୁ ଗୁଣୁ ଅଳି
ଘସୋରୁ ଗୁଞ୍ଜିବା ତାର,
ରବି ଶଶି ତାରା ଲୁଚନ୍ତୁ ଗଗନେ,
କି ତହିଁ ଅନ୍ତର ମୋର ?
ଏ ତରୁ ଶାଖାଟି ମୋ ଘଣ୍ଟ ସାରା ହେ,
ମୋ ଜୀବ ଜୀବନ୍ତ ନିଧି,

ଯେତେଦିନ ଏଥି          ଗାଉଥିବ ବସି
ଲକ୍ଷ୍ୟ ମୁଁ ପାରିବ ସାଧି ।
ସନ୍ତତ ବରଷା,          ପବନ ପ୍ରବାହ,
ତପନ ତପତ ତେଜ;
ବରି ଯା ଜୀବନେ          ନେଇଛି ବାରେ କି,
ତା ତତ୍ତୁଁ ବଳି କି ନିଜ ?
ଡାଳୁଁ ଡାଳେ ଉଡ଼ି          ପଥ ଗହଳେ ଟି
କୋଇଲି ଉଷତ ସିନା,
କନକ ଭୂଷଣେ          କବା ଅଛି ତାର
ବହଗ ପସ୍ୱଣ ଯେନା ?



# ଜାଗର

କେତେ କାଳ ଅନ୍ଧରଳ ବସିଲଣି ଲୁହିଁ,
ନୟନେ ପଲକେ ହେଲେ ନିଦ ଆସେ ନାହିଁ ।
ଜଳ ସରିଲାଣି ଏବେ ଘାପର ଚଇଳ,
ନଭିଯିବ, ହୋଇଯିବ ସକଳ ଅନ୍ଧାର ।

ଯାରେ ମୁଁ ଅନାଇ ଏଥି ବସିଲି ରାତିଏ,
ଛୁପ୍ପା ଛାର ଅଂସି ବାରେ ନାହିଁ ଦେଖାଢଏ ।
ଶୋଇଥାନ୍ତି ଯେବେ ଆହା ମନ ଝଟେନାଦନେ,
ଦେଖିଥାନ୍ତି କେତେ ବୃନ୍ତୁ ସ୍ୱପନ ଶପ୍ନନେ ।
ଛଢ଼ିଁ ମଧ୍ୟେ ଆସି ପୁଣି ଖେଳଥାନ୍ତା କେତେ,
ଯାରେ ମୁଁ ଲୋଡ଼ଇ ତାର ପ୍ରତିମା ନିରତେ ।
ଶପ୍ନନେ କ ସପନେ ତା ନୋହିଲି ନକର,
ନଭିଯିବ ଏବ୍ବେଷଣି ସ୍ତକ ଜାଗର ।
ଏବ୍ବେଷଣି ଖଞ୍ଜିଯିବ କାଳ ଅନ୍ଧାରିଆ,
ଉଡ଼ ନଭେ ଝବ୍ ଦେଇବ କୁଆ, କୁମ୍ଭାଟୁଆ,
ଦିବସ ଆଲୋକ ଯୋଟି ଆସିବ ଭୂଭରେ ।
ଜାଗର ନିଦ୍ରାଇ ଲୋକେ ଯିବେ ଯେ ଯା ପଥେ;
ମୁହିଁ ଆହା କ କରିବ, ଯିବ ଅବା କାହିଁ,

ମୋ ଜାଗର ବ୍ରତ ଲବେ ପୂର୍ଣ୍ଣ ତ ନାହିଁ !
ରାତିକର ଶୋଇବାରେ, ରାତିକ ଜାଗରେ
କି ଲୋଡ଼ା ଜଗତେ ପୁଣି, କି ଫଳ ବା ଫଳେ
ସପନ ପ୍ରତିମା ଆସି କରେ ପରିହାସ,
କ୍ଷଣୁ କ୍ଷଣେ ଫେରି କେତେ ବିଲସୁ ବିକାଶ;
ରାତିକ ଜାଗର ପୁଣି ନଭେ ଉପତନେ,
ଜୀବନର ନବରଙ୍ଗ ଅନନ୍ତ ଶୟନେ ।
କି କରିବି, କାହିଁ ଯିବି ?—ନପାରେ ମୁଁ ଭାଳି;
ଜୀବନୁ ଅଧେ ମୋ ଆହା ମିଛେ ଗଲା ଗଳି !



# ଯାଚ କି ପାରିବି ? *

ଘେନ ଏ ସୁମନ          ମାଳାଟିକ ଗଳେ,
ସେନେହେ ପତାଇ ଶିର;
କହେବ କବି ହେ,          ନ ଜାଣେ କାହିଁରେ
ତବ ଯୋଗ୍ୟ ଉପହାର ।
ଜନମ ଭୂମିର          ଆରତ ସ୍ୱଗୁଣେ
ରଖିଛୁ ଯତନେ ଠେକ;
ନିଜ ବେନ କରେ          ମଣ୍ଡିଛୁ କୁଶଳେ
କନକ ଚନ୍ଦଣ ଲେଖି ।

---

* କବି କଲିକତାରେ ପଢ଼ୁଥିବା ସମୟରେ ଯେଠାରେ ଓଡ଼ିଆ ଗ୍ରନ୍ଥମାନେ ଦଳେ ବ୍ୟାସକବି ଫକୀରମୋହନଙ୍କୁ ଅଭିନନ୍ଦନ କରିଥିଲେ । ବ୍ୟାସକବିଙ୍କ ଘର ବାଲେଶ୍ୱର ସହରରେ, ଏକ ଫୁଲ୍ ବଗିଚା ମଧ୍ୟରେ । ବାଲେଶ୍ୱରର ପାଖକେ ସମୁଦ୍ର ଓ ଅନ୍ୟ ପାଖରେ ଅରଣ୍ୟାନୀମୟ ଅଭେଦ୍ୟ ପର୍ବତମାଳା । ବାଲେଶ୍ୱର ସହର ବଳଙ୍ଗନଦୀ କୂଳରେ । ଧାଳିଆ ନଦୀ ଓ ଘଣ୍ଟଶିଳା ପାହାଡ଼ କବିଙ୍କ ଜନ୍ମସ୍ଥାନ ବାଣପୁରରେ । ବ୍ୟାସ କବି ବାଣପୁର ଯାଇ ନଥିଲେ । ତେଣୁ ସାଳିଆ ଓ ଘଣ୍ଟଶିଳା ତାଙ୍କ ମହତ୍ତ୍ୱ ଉପଲବ୍ଧି କରିବାର ସୁଯୋଗ ପାଇ ନଥିଲେ, କିମ୍ବା ବାଣପୁରବାସୀ କବିତା ଚର୍ଚ୍ଚା କରୁ ନଥିବା ଯୋଗେ ତାହା ଘଟି ପାରିଥାଏ ।

‘ମାମୁ’, ‘ଉପହାର’,   ‘ଧୂଳି’, ‘ପୁଷ୍ପମାଳା’;
‘ଛଅ ମାଣ ଆଠଗୁଣ୍ଠ’—
ଆଜି ଯେତେ ଯେତେ   କରିତ ପାରନ୍ତ
ଏ ମରତେ ବଇକୁଣ୍ଠ;
ତାହାର ରଚକ   ଉତ୍କଳ ମଣ୍ଡପେ
ଦୋସର ବାଲ୍ମୀକି ଆଜି,
କଳିଙ୍ଗ ପୁଲିନେ   କରୁଛ ବିହାର,
ସରଗ ସମ୍ପଦ ରାଜ ।
ଶଇଳ ସାଗର   ଯୁଗଳ ଅଧରେ
ଖେଳେ ଯେ ମୋହନ ଗୀତି,
ତହିଁ ମଧ୍ୟେ କବି   ଦେଇଅଛ ତାନ
ଆପଣା ହୃଦବ ପ୍ରୀତି ।
ନିଜ କୁଞ୍ଜବନେ   ବିହରି ପୁଲକେ,
ତୋଳୁଛ କନକ ଫୁଲ,
ହୃଦ ଉପବନୁ   ନବ ଫୁଲ ନିତି
କରି ଅନୁରାଗେ ତୋଳ ।
ଉତ୍କଳ କମଳା   ବିଳାସ ଭଣ୍ଡାରେ
ଥାପିଛ ଯେ ନିଧିମାନ;
ଯୁଗେ ଯୁଗେ, କବି,   ସୁମରୁ ଥିବେ ହେ
ତବ ଏ ମହାସ୍ୱ ନାମ,
ମହେନ୍ଦ୍ର ମନ୍ଦର   ଶିରୁ ମେଘାସନ,
ଋଷିକୁଲ୍ୟା ମହାନଦୀ,
ସୋଳର ଘାଲେଶ   ବେଢଣେ ଚିଲିକା
ମୃଦୁ ମନ୍ଦ ମହୋଦଧି;

ଗୋଟି ଗୋଟି ଯେତେ ଚରଣ ସମ୍ପଦ
ସ୍ୱରଗ ସୁଷମା ବଳ,
ସ୍ୱର ହେଉଥିବେ ଜୀବନ ଅସ୍ତନେ,
କାଳ ପାରାବାରେ ସ୍ଥଳ ।
ଭୁଲନାହିଁ ତବ ମଦରୁ ସାଳଆ,
କଳନାହିଁ ଘଣ୍ଟିଲା,
ତେଣୁ ତୁମ କଥା ଝସୋର ପାରନ୍ତ
ଅନୁସରି ଉବଲ୍ଲା।
ଏ ମହୀ ଉତ୍କଳ ଜାନ୍ତ ଜୀବନେ ବା
କ କ୍ଷୁଦ୍ର ରେଣୁଟି ମୂର୍ତ୍ତି;
କ ଭଲ, ଜବ ହେ, ହୃଦ ଉପହାର
ଚରଣେ ପାରିବ ଥୋଇ ?
ଅମର ଆଶିଷୁଁ କଣିକା ମାତର
ବରଷି ଦିଅ ମୋ ଶିରେ—
ତୁମ ଭଳ ସୁଖେ ପାରିବ ବଦର
ଏ ପ୍ରିୟ ଜନମୀ କୋଳେ ।
ଜନମୀ କ, କବ, ଡାକ ମୁଁ ପାରିବ
ସନ୍ତାନ ସେନେହେ ଗ୍ରାହେ;
ତା ଧୂଳିରେ ତାଳ ଦେବ ଏ ଶୋଣିତ
ହୃଦ ପୁଲକିତ ହାସେ;
ଉତ୍କଳ ମାତାର କୋଟିଏ ସନ୍ତାନ
ଗୋଟିଏ ପରାଣ ଧରି,

ନଧୀ ଗିଣ ବନ୍ଧୁ ଅତୁଳ ସମ୍ପଦ
ଆଣିବେ ଆଦର କରି ।
ଏ ଗୋଟି ଚରଣ ପୂଣ୍ୟ ପିଠା ଆହେ,
ନନ୍ଦନେ ରଚ୍ଛିନ୍ତ ବସି;
ଯାଚ କି ପାରିବ ? ଦେନ ଏ ମାଳାଟି,
ତୁମର ସମ୍ପଦେ ରତ ।



# ନିଛ

ପାହାନ୍ତିରୁ ଉଠି କୁଆ ରଡିବାର ଆଗେ,
କୁଆଁତାରା ନ ଉଇଁଣୁ ଉଷାର ସରାଗେ,
ଦେଉଳର ଘଣ୍ଟାରୋଳ ନ ଥାଆନ୍ତା ବାଜି,
ନ ଥାଆନ୍ତା ବାଟୋଇର ଶ୍ରମ ନିଦ୍ରା ଭାଜି,
ବୋହୂମାନେ ଘାଟେ ଆସି ନ ଥାନ୍ତେ ଗାଧୋଇ,
ଫୁଲଲତା ବିମୋହନ ରହିଥାନ୍ତେ ଶୋଇ,
ବିନ୍ଦୁ ବିନ୍ଦୁ ଅଯତନେ ପଡ଼ିଥାନ୍ତା ଝରି,
ଯାମିନୀ ଦିବସ ମେଳେ ମଧୁ ଅଶ୍ରୁବାରି,
ଗଛ ପତ୍ର ପାହାନ୍ତିର କାକର ବରଷା,
ଗଛ ପତ୍ରେ ନିଧି ସେ ଯେ ସୁଖ ଦୁଃଖ ମିଶା !

ସେତେବେଳେ ଉଠି ମୁହଁ ପଖାଳି ଶରୀର,
ଫେରି ଆସିଥାନ୍ତି, ପାଦ ବେଗେ ଚର ଚର ।
ପାହାନ୍ତି ଶୀତଳ ସୁଧା ଜୀବନ୍ତ ପବନେ
କହୁଥାନ୍ତି ମନ କଥା ମଧୁ ଆଳାପନେ ।

ଫୁଲଅନା କୁଞ୍ଜେ ବୁଲି, ତମାଳର କୋଳେ,
ଗାଇଥାନ୍ତି ହୃଦ ଗୀତ ମୃଦୁ ମନ୍ଦ୍ର ସ୍ୱରେ ।
ନୟନ ନିମିଷେ ମୋର ଅକ୍ଷତଟି ଆଣି,
ପାଦ ସ୍ପର୍ଶେ ଦେଇଥାନ୍ତି ସରସେ ମେଲାଣି

ଶୁଭ ଗୀବନର ସ୍ୱପ୍ନ ସ୍ୱଳ ଅବଦ୍ଧେଲେ,
ପ୍ରଣମି ଆଆତ୍ମ ପ୍ରେମେ ବନ୍ଧୁ ଶ୍ରୀପଦ୍ମରେ ।

ନ ଦେଲ ନ ଦେଲ; ଆଜ ଦନଟି ବଫଳ,
ଏ ଯେ ସୂର୍ଯ୍ୟ ଭଇଁଲଣି ବଦ୍ଧ ଭଚଳ ।
କାନ୍ଦିଁଗଲ, ବନ୍ଧୁ ଆଜ ନଦେଲ ଜଠାଇ,
ଶପ୍ନେ ମୋ ଗୁଚ କଥା ମନେ ମୋର ନାହିଁ ।
ମୋ ନଜକୁ ନରନ୍ତର ଯାଏ ମୁଁ ପାସୋର,
ସ୍ମୃତିସ ବେଳକୁ ଠିଆ ହୁଏ ଥରା ମାତ ।
ସ୍ମୃଲେ ପୁଣି ଯେବେ ମୋର ଠିଆ ହେବା ବେଳ,
ମୋ ନଜ ପଗ୍ୱଣ ମୋତେ ଅତ ଅସମ୍ଭାଳ ।

ଏକା ମୁହିଁ ଏ ସଂସାରେ ପାଇବ କ ରକ୍ଷ,
ଏ ଗୀବନ ଘାଗ ମୁଣ୍ଡେ ଏକାକୀ ଟି ବନ୍ଧୁ ?
ତୁମେ ଯେବେ ପାଖେ ପାଖେ ଜଗିଥିବ ମୋର,
ବ୍ୟର୍ଥ ଯିବା ଦେକେ ନଧି ପାଇବ ଆଦର ।

ଏକାକୀ ଏ ପ୍ରାଣ ଲକ୍ଷ୍ୟ ତୁଷ୍ଟରୁ ମୋ ପ୍ରାଣ,
ବଶ୍ୱ ବସାଗରେ କାହିଁ ହୋଇଯିବ ଲୀନ ।
ସେତେବେଳେ ଖୋଜ ଖୋଜ, ଏଣେ ତେଣେ ଧାଇଁ
ମୋ ନଜ ଚିହ୍ନକ ମୁହିଁ ନପାରିବ ପାଇ ।
ଘକୁଥିବ ଦେଲ କର୍ମ ଅକାଳେ ଯେମନ୍ତି,
କର୍ମ ନ ଦେଖିଲ ନତ ପାଶେ ମୋର ଆସି ।
ନଯାଅ ନଯାଅ, ବନ୍ଧୁ, ଛାଡ଼ ମୋତେ କ୍ଷଣେ,
ମୋ ନଜ ବଳ ହେ ନଟ, ତୁମେ ମୋର ଜାଣେ ।

# ପାଦତଳେ

ଧୀରେ ମନ୍ଦ ମନ୍ଦେ ଆସଇ ସମୀର
କାନନେ ପ୍ରାନ୍ତରେ ବହି,
ଉପବନେ ଯାଏ ତରୁଲତା ଅଙ୍ଗ
ମଧୁର ପରଶେ ଛୁଇଁ ।

କେତେ ଶ୍ୟାମ ଶୋଭା ମୃଦୁ ଖେଳ ମେଳେ
ପବନ ସୋହାଗେ ତାଳି,
ଡାଳେ ଡାଳେ ଆହା ପଲ୍ଲବ ନିକର
କରନ୍ତି କେସନ କେଳି !

କୁସୁମ କେଶର ମଧୁ ଆହରଣେ
ଭ୍ରମର ପୀୟୂଷପାୟୀ,
ଛଳ ଛଳ ଖେଳେ, ପବନ ବାରତା
ଗୁଣୁ ଗୁଣୁ ଗୁଣୁ ଗାଇ ।

ଆଶା ଅଛି, ବନେ ବସନ୍ତ ରସିକ
ପିକ ବସି ସେ ଉଦ୍ବେଳେ,
ସରଗ ଝଙ୍କାରୀ ସୁଧା କଣ୍ଠ ଧାର
ତାଳଦେବ ମହୀତଳେ ।

ତୁତ୍ଵ,ରେ ଅଗ୍ରତା ସେ ପୁଣ୍ୟ ମେଳାପେ
ବଢ଼ଉ ସରଗ ତେଜେ,
ଜମିଷେ ଆବର ମୂରୁଛୁ ସକଳ
ପଡ଼ିଲୁ ଏ ଧୂଳ ଶେଯେ ।

ଚକ୍ଷୁ ଡାଳେ ତୋରେ ସେନେହ ସଙ୍କୋଚେ
ଧୀରେ ପଲ୍ଲିଶନ୍ତ ଯ ଇ
ଧୂଳ ଶେଯେ ଏବେ ଖାଦ ଚଳେ ଆହା
ମାଡ଼ ହେଲେ ଯିବ ମୁହିଁ ।

ପଡ଼ିଅଛୁ ଯେବେ ଚକ୍ଷୁଡାଳେ ତଳ
ସୁଖେ ତୋ ଖେଳିବା ତେଜ,
ଚକ୍ଷୁ ଚଳେ, ଫୁଲ, ପଡ଼ ରେ ଆଦ୍ଭର
ଏ ଧୂଳି ଶେଯ ବରଜ ।

ସେ ସଖା ମେଳାପେ ସୁଖେ ଖେଳିବାର
ହେଲନାହିଁ ଯେବେ ଆଜ,
ଏ ମର ସଂସାରୁ ଚିର ଲଗି ଆଜ
ଲୁଚ ତୋ ସ୍ୱରୂପ ସାଜ ।

# ଏକାନ୍ତେ

ଏକାନ୍ତେ ବସିଛନ୍ତି ନାରୀ ବନସ୍ତ ଉତଭ,
ନୟନୁ ଲୋତକଧାର ବହେ ଝରଝର;
କେବେ କେବେ ପଦେ ଅଧେ କହୁଅଛନ୍ତି କଥା,
ବାକ ଯାକ କରେ ପୂର୍ଣ୍ଣ ତାର ନୀରବତା ।

ମୁଁ ପୁଣି ଏକାକୀ ପାନ୍ଥ ସୁଦୂର ବନସ୍ଥେ,
ସାଥୀ ସାଥି ଲେଉଟେ ମୋର ସେ ସ୍ୱଜନ ପଥେ ।
ଏକେ ମୁହିଁ ବାଟ ବଣା, ଆକୁଳ ଦୋସର;
କାହିଁ ଯାଏ, କ ଧିଆନେ, ନୁହଇ ଗୋଚର ।

ଦେଖିଲି ଏକାନ୍ତେ ବସି କାନ୍ଦଇ ରମଣୀ;
କ୍ରନ୍ଦନୁ ଅଧିକ ତାର ନୀରବ ଗୃହାଣୀ ।
ଲୋତକେ ଲୋତକ ଝରେ ତିନ୍ତିଲା ନୟନ;
ମନର ବେଦନା ହେଲେ ବୁଝିବ କ ମନ ?
ରମଣୀ ଢଳଇ ବସି ଆକୁଳ ପରାଣେ,
ଅନାଇଁ ମୁଁ ରହିଥାଏ ତାପିତ ଧିଆନେ ।

କେନ୍ତ ନ ବୁଝିଇ ହେଲେ କାହା ହୃଦ ତ୍ରାସ,
କେବନ ଜନ ନେତ୍ରୁ ଯାଏ ବନ୍ଧ ଅଶ୍ରୁ ଶ୍ୱାସ ।
କେତେବେଳେ ପଶଣୁ ମୋ ଅନ୍ତ ଅତର୍କିତେ,
ବନ୍ଧୁ ସ୍ନେହ ଦୀର୍ଘଶ୍ୱାସ ଗଲ୍ଲଟି ଭୁରିତେ ।
ନ ବୁଝିଲି ନାଶ ତହୁଁ ନ ପାରିଲି କଳି
ଦେଖିଲି, ବଦଳିଲ ରଙ୍ଗ ପିଞ୍ଜରାରୁ ବଳି ।
ନେତ୍ରପୁଟରେ ଆସିଗଲା ଜ୍ୟୋତି ଅକଳନ,
ହୃଦୟେ ହରଷଧାର ଖେଳେ ଘନ ଘନ ।
ହସିତ ବଦନେ ମୋର ଅନାଇ ସେ ବାରେ,
ଫେରି ତହୁଁ ଲୁଚିଗଲା ବିପିନ ଉଢ଼ାଳେ ।
ଖୋଜେ ନାହିଁ, ଖୋଜିଥିଲେ ନଥାନ୍ତ ମୁଁ ପାଇ;
ସେତ ନଷ୍ଟେ ରହିଥିବ ବହୁଦୂରେ ଯାଇଁ ।
ଗମ୍ଭୀର ବଦନେ ମୁହିଁ ହେଲି ମାତ୍ର ଠିଆ,
ବିଚ୍ଛେଦ ସେ ସିନା, ମୋର ପୂରିଗଲା ହିଆ ।

ଦିନେ ଭ୍ରମେ ସାଙ୍ଗେ ଗୁଡ଼ ଗ୍ରୀଷଣ ଏକାକୀ,
ଭ୍ରମି ଭ୍ରମି ବହୁପଥ ପାଦ ଯାଏ ଥକି ।
ଆଜି ଖଣ୍ଡେ ଦୂର ଗୃଲି ଦେଖଇ ନପୂତ,
ଶ୍ୟାମଳ ପ୍ରାନ୍ତର ଶୋଭା ଚଟିମା ସେକତ ।
ଜଳ ବେଣୁଚାନେ ମିଶି ଗାଇ ଚହୁସ୍ୱନ,
କି ସୁଧା ସଙ୍ଗୀତେ ଭରେ ବସୁଧା ଗଗନ,
କନକ କୁସୁମ, ରୁହିଁ ପଲ୍ଲବ ଗହଣେ,
ଦେଖଇ ବଦନ ଶୋଭା ସଲିଳ ଦର୍ପଣେ ।

ଯେ ବେଳେ ଉଦାସ ମନେ ଧୀରେ ବୁଲିବାର,
ଏହିଠାରେ ସେ ନାରୀଟି ଭେଟିଲି ଆବାର ।
କାନନ ନିକୁଞ୍ଜ ଶୋଭା କୁସୁମ ମାଧୁରୀ
ଖେଳିଲେ ଯେଉଁଠି ତାର ସ୍ମୃତି ପ୍ରତିଫଳେ ଭଳି,
କେଶର ପରାଗ ସୁଧା ସୁବାସେ ଧଳିତ
ସମୀରେ ଉଚ୍ଛୁଳ ଉଠେ ସୀମନ୍ତିନୀ ଚିତ୍ତ ।
ଏଣୁ ଯାଇଁ ରହିଲି ମୁଁ ନୀରବ ଧିଆନେ,
ସେ ନାରୀ ନିସର୍ଗ କ୍ରୀଡ଼ା ସମ୍ପାଦ୍ୟ ପରାଣେ ।

ସେଦିନ ମୋ ଦେଖା ନାରୀ ସଙ୍ଗତେ ସେହିନ;
ଆଜ ଥରେ ଭେଟ ହବେ ନୋହିବ ଯେସନ ।
ମୋ ଜୀବନ ଗଢ଼ା ବନ୍ଧୁ ଦୁଃଖ ଦାନତାରେ,
ମୋ ଚିତ୍ତ ଭାସଇ ଭବ ଦୁଃଖ ପାରାବାରେ ।
ସେହି ମୋ ସମ୍ପଦ, ସେ ମୋ ହୃଦ ସ୍ପର୍ଶମଣି;
ତହିଁ ମୁଁ ହୋଇଛି ପରା କୁବେରରୁ ଧନୀ ।
ସେ ଧନର ନାହିଁ ଲବେ ପାର୍ଥିବ ଗୁରୁତା,
ସେ ଧନେ ନୁହେଁ ମୁଁ ତିଳେ ଧରା ସହ ଗୁନ୍ଥା
ଜଗତ ଯାବତ ଦୁଃଖ ବହି ହୃଦ ପିଠେ,
ତେଣୁ ମୁଁ ପାରଇ ଉଡ଼ି ବହଗ ସହିତେ ।
ହୃଦୁ ହୃଦନିଧି ପଙ୍କେ ପଙ୍କଜିବ ଖସି,
ପରାଣେ କନକ ଭ୍ରମ କେ ବହିବ ହସି ?
କେ ସହିବ ସେନେହର ହୃଦ ନିଯାତନ,
ବଜନ ସମ୍ଭୋଗେ ବଞ୍ଚ ପାରିଲେ ଜୀବନ ?

# କିଶୋର କବି

ଆପଣା କବିତା ପାଠେ ମୁଗ୍ଧ କବିବର
ପୁଚ୍ଛନ୍ତି ବିଷାଦ କୋପେ ଅତି ଜର ଜର—
"ହୃଦ କି କରିଛ, ସଖା, ପାଷାଣୁ ନୀରସ,
ନିତି ମୋ କବିତା ପଢ଼ି ବାଛୁଥାଅ ଦୋଷ ?"

ସେନେହେ ବିନୟେ ସଖା କରଇ ଉତ୍ତର,—
"ଛମା କଥାରେ ମିଛେ ଏତେ ଭାବନା ତୁମର
କବିତା ନାହିଁ ମୁଁ ବୁଝେ; ଜାଣିଥିବ ସତ,
ମୁ ଯାହା କହଇ ଖାଲି ଅପରଙ୍କ ମତ ।"



# ରଖିଥିବ ଚିତ୍ତେ

ପରାଣ ସୋଦର ଆହେ, ହୃଦୟ ପ୍ରତିମା,
ଜୀବନେ ମୋ ଚିରନ୍ତନ ଅଳି—
କରମ ବିଷମେ ନିତି, ଦୁଃଖ ବଇଭବେ
ହୃଦ କୋଣେ ରଖିଥିବ ଧରି ।
କିଅଛି ମରତେ ମୋର ସୋହାଗ ସମ୍ପଦ
ଯାହା ତୁମେ ଦେଇନାହଁ ମୋରେ ?
ରୋଗ ଶୋକ ପରିତାପେ ଅନିଦ୍ର ନୟନେ
ବାନ୍ଧିଛ ହେ ପ୍ରୀତି ସୁଧା ଡୋରେ ।
ଜୀବନ କଲୁଷ ପଙ୍କୁ ଟାଣିଛ ଯତନେ,
ଢାଳି ହୃଦ ପୀୟୂଷ ଆସାର;
ଆପଦ ଆତଙ୍କେ ସଦା ହୋଇଅଛ ସାଥି
ସନ୍ତରଣେ ଭବ ପାରାବାର ।
କେତେ ଦିନ କେତେମନ୍ତେ ନିଶୀଥ ବିହାରେ
ତୁମ ସଙ୍ଗେ ବସିଛି ଧିଆନେ;
କେତେ ସୁଖ ଦୁଃଖ ସ୍ମୃତି ଜଡ଼ିତ, ସୋଦର,
ତୁମ ମୋର ଯୁଗଳ ପରାଣେ ।
ବାଲ୍ୟର ବୟସ କଥା ଯେତେ ଏ ଜୀବନେ
କେତେ ଦୂରେ ରହିଛି ସକଳ;

ଚକ୍ଷୁଁ ମଧ୍ୟେ ଅପଚନେ ଅମର ବିକାଶେ
ତୁମ ସ୍ମୃତି ଖେଳେ ଅବିରଳ ।
ମରଣ ନଗଡ଼େ ଛଡ଼ି ଅବଶେ ବିପାକେ
ଯାଉ ଯେବେ ହେଲି ମୁଁ ବିକଳେ,
ଜୀବନ ଶରଣ ମଧୁ ସୋହାଗେ ସେବନ
ଡାକି ମୁଖେ ଦେଲ ତ ଚଞ୍ଚଳେ ।
କେତେ କେତେ ସ୍ମୃତି ମଧ୍ୟେ ଏ କଥା ଗୋଟିକ
ହୃଦେ ମୋର ରହିଛି ଅଙ୍କିତ,
ଜୀବନେ ମରଣେ କେବେ ପାରିବ ବିସୋରି,
କି ସମ୍ପଦେ କରିବ ପାଲଟ ?
ଅନୁଜ ସେନେହ ଭରେ ହୃଦ ପୀଠେ ନେଇ,
ଅଗ୍ରଜ ହେ, ରଖିଛ ଆଗ୍ରହେ;
ଏତେ ସୁଖ ସଉରଭ ଦସ୍ତୁର ପାତର
ହେଲି ପିନା ତୁମ ଅନୁଗ୍ରହେ ।
ଜୀବନ ଯୌବନ କ୍ରୀଡ଼ା ସମ୍ଭାବ ପୁଲକେ,
ଆଜ ଏବେ କରମ ବିଦେଶେ,
ସାଧନା ବେଦୀରେ ବେନି ଚରଣ ନବେଣି,
ମିଶାମିଶି କୋମଳ ପରଶେ ।
ସେନେହ ସୋଦର ବାଣୀ ସୁଖେ ଅନୁସରି,
ନଡ ବନ ଭ୍ରମିଛୁ ଯେ ପଥେ,
ଆଜ ମଧ୍ୟ ସେହିଠାବେ ରହିଛୁ ଅନାଇ;
ଅଗ୍ରଜ ହେ, ରଖିଥିବ ଚିତ୍ତେ ।

# ନୂତନ୍ତୁ ଓଯଟେବ ସଭ୍ୟ ପରିବାର *

ନବ ରାଜଧାନୀ ଏବେ ପ୍ରାସାଦେ ଶୋଭନ
ଇତିହାସ ଗର୍ଭେ ଲୁପ୍ତ ଏକାମ୍ର କାନନ ।
ଉତ୍ସଙ୍ଗେ ଥିଲା ଯେ ତାର ମକା ବାଡ଼ି ଗୋଟି,
ଫଳ ଭରେ ଗଛ ତଳେ ଯାଉଥିଲେ ଲୋଟି ;
ମକାରେ ସତୁଁ ମୋ ଥାଏ ଶରଧା କହିବେ,
ଯାଇ ତହିଁ ପ୍ରବେଶିଲୁ ତିନେ ପ୍ରତ୍ୟାଶିରେ ।
ଭାବିଲି, ନବିକ ଦେଉଥିବେ ତ ମାଗଣା,
ବଡ଼ଘର ଜନ ପରା, ସମୁନ୍ନତମନା ।
ସରମ ନରଖି ମକା ମାଗିଲି ମୁଁ ଏକ;
ନମଣିଲ ତିଳେ, ଦାନ ଲଭିବ ମୋ ଟେକ ।

---

* କବି ୧୯୩୨ ମସିହାରେ ବିହାର ଓଡ଼ିଶା ବ୍ୟବସ୍ଥା ସଭାରେ ଯୋଗ ଦେବାକୁ ରାଞ୍ଚି ଯାଇଥିଲେ । ତାର ଶରତ୍‌କାଳୀନ ବୈଠକ ରାଞ୍ଚିରେ ବସେ । ଶ୍ରୀ ନିକୁଞ୍ଜ କିଶୋର ଦାସ, ଶ୍ରୀ ରାଧାରଞ୍ଜନ ଦାସ ଓ ଶ୍ରୀ ଜଗନ୍ନାଥ ଦାସ ମଧ୍ୟ ସେ ବ୍ୟବସ୍ଥା ସଭାର ସଭ୍ୟ ଥିଲେ । ସେମାନଙ୍କ ସହିତ କବିଙ୍କର ଗାଢ଼ ବନ୍ଧୁତା ଥିଲା । ଏ ପଦ୍ୟର ତିନି ସଙ୍ଗୀ ସେହିମାନେହିଁ ହୋଇଥିବେ । କବି ସେମାନଙ୍କୁ ନିଜ ସରଳ ଢଙ୍ଗରେ କେତେକ ପରିମାଣରେ ପ୍ରଭାବିତ କରି ପାରିଥିଲେ ।

ଥିଲା ଉଗ୍ର ନାରୀ, ଶୁଣି କରିଦେଲା ନାହିଁ,
ପଶିଗଲା ସୌଧେ ଭୃତ୍ୟ ବଦନ ବୁଲାଇ ।
ସଙ୍ଗୀ ମୋର ସଙ୍ଗେ ସଙ୍ଗେ କ୍ରୋଧ ଜର ଜର,
କି ଅବା କହନ୍ତେ, ସେଣୁ ସ୍ୱଭାବେ ମୁଖର ।
ଦ୍ରୁତପଦେ ଯେନ ତାଙ୍କୁ ବାହୁଡ଼ାଲି ପଥେ,
ଚିହ୍ନିଲି କି ଭ୍ରମେ ମୁଁ ପଡ଼ିଗଲି ସତେ ।
ରୂପେ କି ସୁନ୍ଦରୀ ନାରୀ, ବେଶ ଅନୁପମ,
ଦେଖନ୍ତେ ଝଲସେ ନେତ୍ର ତୃପ୍ତ ହୁଏ ମନ ।
ଦ୍ୱାରୁ ପଳାଇଲା ଯେହ୍ନେ ଲକ୍ଷ୍ମୀ ରୁଷ୍ଟ ମତ,
ନ ଗଣିଲା ହୃଦେ ମୋର କି ହୋଇବ ଗତ ।
ବାଇଶ ବରଷ ତଳ ସ୍ମୃତି ମୋ ଅନ୍ତରେ,
କେଉଁ ଖରେ ଆସି କାହୁଁ ନାଚଗଲା ଥରେ ।

ସୁଦୂର ପ୍ରବାସେ ରମ୍ୟ ନଗରୀ ଉପାନ୍ତେ,
ତିନ ସଙ୍ଗୀ ସହ ଦିନେ ବୁଲୁଥିଲି ପ୍ରାତେ ।
ଶରତ ପ୍ରଭାତ ଶୋଭା ଫୁଟି ଚଉପାଶେ,
ସୁରଗ ସମ୍ପଦ ଢଳେ ଅବନୀ ଆକାଶେ ।
ବାଟେ ଏକ ମକା ଖେତ ଫୁଲ ଫଳେ ଭରା,
ତା ଶ୍ରେଷ୍ଠ ସମ୍ଭାର ସତେ ବାଢ଼ିଅଛି ଧରା ।
ଓରାଙ୍ଗ ଯୁବତୀ ଗୋଟି, ଏକା ତହିଁ ବସି,
ସୂତା ହାତେ କାଟେ, ଗୀତ ଗାଉଅଛି ହସି ।
ସେ ଶରତ ଶିରୀ ମଧ୍ୟେ ସେ କି ଏକ ଶିରୀ,
ବିଭବେ ଟପଇ ସାରା ବନ ନଦୀ ଗିରି ।

ଗୃହ ସଙ୍ଗୀ ଯାଇ ମକା ମାଗିବାରେ ତାକୁ,
ଦେଲା ଅନୁମତି ଭୃତ୍ୟ ନିଜେ ତୋଳିବାକୁ ।
• କିନ୍ତୁ, ତା କାମେ ସେ ପୁଣି ଲାଗିଲା ଉଦାସେ;
ନ ଗୃହିଁଲା ଖେତ କେତେ ଜୁର ହୁଏ ପାଶେ ।
ଗୃହ ସଙ୍ଗୀ ଦଣ୍ଡେ କେତେ ବୁଲି ଦେଖି ଖେତ,
ସୁକୃତ ସୁଦତ୍ତ ଧନେ ପୂର୍ଣ୍ଣ କଲୁ ନେତ ।
ଶେଷେ ଏକ ମକା ଧରି ଫେରନ୍ତେ ବାହାରେ,
କି ଭାବିଲା ଯୁବକଟି ସେ ଅନାଇଲା ଡାଳେ ।
ଆମ ଧନ୍ୟବାଦ ବାଣୀ କି ଶୁଣିବ କାନେ;
ହସି ହସି ଗଡ଼ିଗଲା, ତା ହେତୁ ସେ ଜାଣେ ।
ଚକିତେ ଗୃହିଁକୁ ଆମେ ଉଭା ଗୃହ ସଙ୍ଗୀ,
କି ବୁଝିବୁ ସେ ଓସଙ୍ଗ ଯୁବକଟିର ଭଙ୍ଗୀ ?

ହସ ଶେଷେ ସେଥି, ବାଳା କହେ ମୃଦେ ବାଣୀ,
"ଗୃହସ୍ଥା ମରଦେ ଏକ ମକା ଅଛ ଆଣି !
ଏ ମୋ ନିଜ ଖେତ, ପର ଖେତରୁ ଅଲଗା,
ମୁଁ ହାତେ କମଣ ଯ୍ୱାର କରେ, ରଖା ଜଗା !
ଜଣକେ ପଣେ ବା ନେଲେ କି ହୁଅନ୍ତା ଦୋଷ,
ଗୋଟିକେ ଗୃହଦେଁ କେହ୍ଲେ ଲଭିଲ ସନ୍ତୋଷ ?"
କିନ୍ତୁ, ବାଳା ଆଉଥରେ ହସି ଗଲା ଲେଟି;
ତୋଳିଅଣି ଦେଲା ବାଳ ଓହ୍ଲିଙ୍କ ଡନୋଟି ।

ସେଦିନ ଏକାମ୍ର ବନେ ସୁମରି ସେ କଥା,
ବନସାସ୍ତ ଆହା କେତେ ନ ଲଭିଛି ବ୍ୟଥା ।
ପୁନର୍ଜନ୍ମେ ପ୍ରତ୍ୟୟ ମୁଁ ଥାପନ୍ତି ଅନ୍ତରେ,
ମରି ଜନ୍ମି ପାରେ ଯଦି ଆଦିବାସୀ ଘରେ ।
ହେଉ ସେ ଓରାଙ୍ଗ, କନ୍ଧ, ଶବର, ସାନ୍ତାଳ,
କି ବାଛିବ, ନୁହେଁ ସେବେ ସଭ୍ୟ ପରିବାର
ସଭ୍ୟତା ଗ୍ରାସିଲ ମୋର ମନୁଷ୍ୟତା ଦେଖ,
ଯେତେ ଉଚ୍ଚେ ଗତି ମର୍ତ୍ତ୍ୟେ ମାନବ ତା ଟେକ ।



# ଅଭୟ ଆଦେଶ *

"ଏତିକି ଲାଞ୍ଛନା ଏଣୁ ନାରୀର ଜଗତେ,
ନାରୀର କପାଳେ ଏଣୁ ଲେଖିଅଛି ସତେ ।"
ଭାବି, ସୀମନ୍ତିନୀ ନେତ୍ରୁ ଢାଳେ ଅବିରତ,
ଜାହ୍ନବୀ ବିଶାଳ ଧାର, ଅବଳା ସମ୍ବଳ ।
ଓଢ଼ଣା ଭିତରୁ ଅଳ୍ପ ଦିଶେ ଚନ୍ଦ୍ରମୁଖ,
ନ ଥାଆନ୍ତା ଛୁଇଁ ଆହା ଏ ପରାଣ ଦୁଃଖ ।
ପାଣ୍ଡୁର କପୋଳ ଧାର ବହିଅଛି ପାଣି,
ସେ କି ନାରୀ, ଅବା ଶବ ପିନ୍ଧିଲା କେଜାଣି ।

ପ୍ରଭାତେ ନ ଉଠୁ ଶେଯୁଁ ଶାଶୂ ଭର୍ତ୍ସି ଗାଳ,
ସେ ତ ସାଧି ଲାଗିଥିଲା ଗୃହର ଜଞ୍ଜାଳ ।
ସେଥିପାଇଁ ଫେରି ଦ୍ୱାର ଆସିଲା ବାଳକ
ଲିପି ପୋଛି ସଫା କରି ରଖିବ ସେ ନଳ ।
ନୂଆ ହୋଇ ନବବଧୂ ଆସିଅଛି ଘରେ,
ସମ୍ଭାଳୁ ଜୀବନ ଶାଶୂ ଗିରସ୍ତ ପଦରେ ।

ସେ ତ ଲାଗିଥିଲା କାମେ ଢାଳି ମନପ୍ରାଣ,
ଶୁଣିଲା, ଲଳିତ କଣ୍ଠେ ଗାଉଛନ୍ତି କେ ଗାନ ।

---

* ୧୯୫୧ ମସିହାରେ କବି ନିଜ ନିର୍ବାଚନମଣ୍ଡଳୀରେ ଭୋଟପ୍ରଚାର ପାଇଁ ବୁଲିବା ସମୟରେ ଏହା ଘଟିଥିଲା । କବିଙ୍କ ଆଶ୍ୱାସନା ଫଳରେ ନାରୀ ଶାଶୂଦେବଙ୍କର ଆଶ୍ରୟ ନେଇ ନଥିଲେ ଓ ସ୍ୱାମୀ ସ୍ତ୍ରୀ ମିଳିମିଶି ରହୁଥିଲେ ।

ଗାଇ ବୁଲୁଥାଏ ପଥେ ଯୁବା ନାଗରିକ,
କଣ୍ଠ ମାଧୁରୀକ ବଳି ରୂପ ତା ଅଧିକ ।
ଠିଆ ହେଲା ତନ୍ବୀ ବାଳା ଏକଇ ଧିଆନେ
କହି ଆସେ ଗୀତ ଧାର ଶୁଣୁଛି ସେ କାନେ ।

କେତେବେଳେ ଆସି ସ୍ୱାମୀ ପ୍ରବେଶିଛି ତାର,
କହିଲା ଗରଜି, "ନାରି, ଏ କି ତୋ ବେଭାର ?"
ପ୍ରହାରିଲା ତାକୁ ପର ପଶୁର ପରାଏ,
ନାଲି ଚିହ୍ନ ବସିଗଲା ତା ସୁବର୍ଣ୍ଣକାୟେ ।
ରୋଳ ଶୁଣି ଶାଶୁ ଆସି ପ୍ରବେଶିଲା ତହିଁ,
ପ୍ରବୋଧନା ଦେବ ଅବା 'ଆହା ଆହା' କହି ।
ସେତ କଲା ବିପରୀତ, ନୁହେଁ କି ସେ ନାରୀ,
ପୁଅଠୁ ଦ୍ୱିଗୁଣ ବଳି ଦେଲା ମାଡ଼ ଗାଳି ।

ତଳେ ପଡ଼ିଗଲା ବାଳା ଭିଜେ ଧୂଳି ଲୁହେ,
ଗଛଡାଳ ଚମ୍ପାଫୁଲ ଲେଟେ କି କାନ୍ଦୁଏ ?
ମାତ୍ର ପୁଅ ମାଆ ଯେବେ ଥକିଗଲେ ଅତି,
କହିଲେ, "ଯା ଚଣ୍ଡାଳୁଣି, ସେ ଚଣ୍ଡାଳ କତି ।"
କହି ଦ୍ୱାର କଳି ବେନି ପଶିଲେ ଆବାସେ,
ବସିଲା ବିଷାଦେ ବଧୂ ବାଡ଼ିକୂଅ ପାଶେ ।
କେତେ ସେ କାନ୍ଦିଲା ଥିବ ସେହୁ ଏକା ଜାଣି,
ପାଣ୍ଡୁର କପୋଳ ଭରି ବହିଅଛି ପାଣି ।
ଭାବୁଛି, "ଏ ମର୍ତ୍ତ୍ୟେ ତ ନାହିଁ ମୋ ଆଶ୍ରୟ,
କୂପ ମଧ୍ୟେ ଗଙ୍ଗାଦେବୀ ଦେବେ ବା ଅଭୟ ।"

# ପିଞ୍ଜରାବଦ୍ଧ ପିକ *

ଯୁଗକ ଅନ୍ତରେ ପୂରି ବାଣୀ ବିମୋହନ,
ଶୁଣିଲି ନିମିଷ ପୂର୍ବେ, ଚପଳା ଯେସନ ।
ଜନତା ନିନାଦ ଭେଦି, ଏ ପୁର ପ୍ରବାସେ,
କାହା କଣ୍ଠ ସ୍ୱର ଆହା ଭାସି କାହୁଁ ଆସେ ।
ବନୁ ବନେ ଉଡ଼ି ଉଡ଼ି ଗାଇନ୍ତୁ ଗାଇଲେ;
ସରସେ ବରଷିବାର ସୁଧା ଅବହେଳେ ।
ସେହି ତ ନଥିଲା ଜନେ ଉଦାସ ପରାଣେ,
ଶୁଣିବ ଶ୍ରବଣେ ବୋଲି ଏ ଶିଳାଭବନେ ।
ଯେବଣ ରାଇଜେ ସର୍ବେ ଧାବନ୍ତ ବେପାର,
ତହିଁ ବନ ମିଳେ କିବା କଣିକା ମାତର ?
କି କାରଣେ ବସି ପିକ ଚରଣ ଶୃଙ୍ଖଳେ,
ପଞ୍ଜୁରି ଭିତରୁ ସୁଧା ଢାଳୁ ଅବହେଳେ ?
ମନେ କି ରଖିନ୍ତୁ ସେତେ ଅତୀତ ବିଭବ—
ଶ୍ୟାମଳ ବିପିନ ଊର୍ଦ୍ଧ୍ୱେ ଶୂନ୍ୟ ମାଳ ନଭ,

---

* କଲିକତାରେ କେହି କେହି ଘରେ କୋଇଲି ପୋଷିଥାନ୍ତି । ବସନ୍ତଋତୁରେ ସ୍ୱଚ୍ଛନ୍ଦରେ ଉଡ଼ୁଥିବା କୋଇଲିଙ୍କ ପରି ସେମାନେ କୁହୁ ସ୍ୱରରେ ରାବନ୍ତି । ଦିନେ ଦିନେ ବିଜୁଳି ଆଲୋକରେ ଉଜ୍ଜ୍ୱଳ ରାତିରେ ଦିବସ ଭାବି ମଧ୍ୟ ରାବିପକାନ୍ତି ।

ପଲ୍ଲବ ଗହଳେ ସୁଖେ ଲୁଚି ରହୁ ଡାଳେ,
କଣ୍ଠଧାର ଢାଳିଦେବା ନିକୁଞ୍ଜ ଉତ୍ତାଳେ ?
ଏତେ ଏତେ ନିଧି ଆଜି କରି ସୁମରଣା,'
ପିଞ୍ଜରେ ଗାଇ କି, ପିକ, ପରାଣ ବାସନା ?

ଭୁଲି ଯାଅ, ଭୁଲି ଯାଅ, ରେ ପିଞ୍ଜର ବାସି,
ମୁହୁଛି ନନ୍ଦନ ଶୋଭା ବନ ଚତୁଃପାଶି ।
ଯେ ରାଇଜେ ଉପବନ ଶ୍ୟାମଳ ମୂରତି,
ପରାଣ ପାଟଳ ଖେଳେ, ଢଳଢଳ ଅତି,
ବିମଳ ନିର୍ଝରମାଳା ଧରି ଅପଘନେ,
ବିଶାଳ ଶଇଳ ଯହିଁ ବିହରେ ଗଗନେ,
ବନ ଛାନେ ବୁଲି ବୁଲି ମୋହନ ସୋହାଗେ,
ଶରଦ ଚନ୍ଦ୍ରିମା ଯାଏ ବିଞ୍ଚି ଅନୁରାଗେ;
କନକ କୁସୁମ ପନ୍ତି ବିକଶି ଉଦାସେ,
ସ୍ୱଚ୍ଛନ୍ଦ ଉରସେ ଭୁଇଁ ବୁଲୁ ପରବାସେ,
ସେ ସରଗ ଦେଶେ ଯେତେ ପିପାସିତ କାନେ,
ଢାଳିବା ଅମୃତ, ଭୁଲି ଉଦାସ ପରାଣେ,
ପିଞ୍ଜରେ ଗାଇବା, ପିକ, ମଣୁ କି ଉଚିତ ?
ଭୁଲି ଯାଅ, ଭୁଲି ଯାଅ, ଦେଲଣି ବହୁତ ।



# ଥକା ମନ ଗୃଲ୍ ଯିବା

ଖରଦିନ ଖରବେଳେ ବାଟପାଖେ ଏକାଠି,
ଗେଗ ଛାପେ ଥର ଥର ଶୋଇଅଛି ବୁଢ଼ାଟି ।
'ଧରି ଧରି', ଡାକୁଅଛି, "ପ୍ରାଣ ଯାଉଛି ଉଡ଼ି;
ଘୁଇ ଚଳେ ନେଇ ମୋରେ ଝଅ ଭୂଇଁରେ ଗୁଡ଼ ।
କେ ଯାଉଛ ବାଟେ, ଆହେ ସାଧୁ ବାଟୋଇ ଜନ,
ଶ୍ରୁଦ୍ଧ ଭଲେ ରଖିଥିବେ, ମୋର ମିନତି ଶେଷ ।"

ଘୋଡ଼ା ଗାଡ଼ି ଚଢ଼ି ସୁଖେ, ମଦା ଆଟୋପେ କାହିଁ
ଯାଉଥିଲେ ସୌଦାଗର ନିଜ ବଣିଜ ପାଇଁ ।
"ଦେଖ, କଏ ଅଛ ଆରେ, କି ହୋଉଛି ବୁଢ଼ାର;
କାହିଁ ଛାରେ ଘୁଇଚଳୁଁ ନେଇ ଭୂଇଁରେ ଗୁଡ଼ ।"
କଳଆର ଟାଣି, ଚତ୍ରୁଁ ଗାଡ଼ିବ୍ଳକ ଭିସ
ଗାଡ଼ି ଠିଆ କଲ ଚହିଁ; ଶୋଇ ରହିଛି ବୁଢ଼ା ।
ଖରେ ବେକ ଜଗୁଆଳ ଗାଡ଼ି ପଛୁ ଓହ୍ଲାଇ,
"ଉଠ ବୁଢ଼ା", ଓଟାରନ୍ତି, "କହ, ଯିବୁ ତୁ କାହିଁ ?"

ମୁଖେ ଘୃଇଁ ଘୃଇଁ ଖଗ ମାରୁଅଛୁ ଚେତନେ,
ଅନେ ବେଗ ମାଡ଼ ଆସେ ବେକୁ ବେଳ ସଘନେ ।
ଅକଟ ଅନାଇ ବୁଢ଼ା ପଡ଼ଗଲା ଦୋସର,
ହାତଠାରେ ଜଣାଇଲା ନାହିଁ ଲୋଡ଼ା ଯିବାର ।
ବେନ ଜଗୁଆଡ଼ିଲ ବେନ ହ୍ରୁର ବଚନ ଘୋଷି,
ଗାଡ଼ ପଛେ ନଜ ଥାନେ ଠିଆ ହୋଇଲେ ଆସି ।
ସ୍ୱଗ ଅପମାନେ ରାଙ୍ଗ ଅର୍ଦ୍ଧ ଅସ୍ଫୁଟ ଗୀରେ
"ଚଲ ଗାଡ଼", ସୌଦାଗର ଦେଲେ ଆଦେଶ ଖରେ ।

ଘଡ଼ ଘଡ଼ ଗଲା ଗାଡ଼ ଘୃଷ୍ଟ ପ୍ରହାରେ ଧାଇଁ,
ଗଳା ମୁଣ୍ଡେ ଅଦୃଶ୍ୟ ସେ ହେଲା ଭୂରତେ ଯାଇ ।
ହୋଇ ନୋହୁଛି କ ବୁଢ଼ା ଅବା ନମିଷେ ଭୁନ,
ଅଧରୁ ଘୋଷିଲା ପୁଣି କ୍ଷୀଣ ଝକଳ ବାଣୀ;—
"କେ ଯାଉଛ ବାଟେ, ଆହେ ସାଧୁ ବାଟୋଇ ଜନ,
ଘ୍ରହ୍ମ ଭଟଲେ ରଖିଥିବେ ମୋର ମିନତି ବେଳ ।"

ଶିବାକପ୍ଲେ ସୋମବାର ପୂଜା ବନ୍ଦିବା ଆଶେ,
ଯାଉଥିଲେ ଝିଧବା ଯେ, ଶୁଦ୍ଧ ପବିତ୍ର ବାସେ ।
ଥୋଇ ଦେଲେ ନଇବେଦ୍ୟ କରଯୁଗୁଁ ଭୂତଳେ,
ଅଧ ଲାଜେ ବୁଢ଼ା ପାଶେ ଯାଇମିଳଲେ ଖରେ ।
ବଦନ ଉଡଣାଟିକ ଟାଣି ଶଙ୍କିତେ ନାସା,
ବୁଢ଼ା ଅଙ୍ଗ ପରଶିଲେ ଲାଜ ସରମ ଗୁଡ଼ ।
ସମ୍ପୂର୍ଣ୍ଣ ପରଶି ନାସା ଛନ୍ତ ଅବା କ ନାହିଁ;
ଚର ଚରେ ଉଠି ବୁଢ଼ା ହେଲା ଠିଆଟି ଚହିଁ ।

ବଳ ଆସିଗଲା କିବା କ୍ଷୀଣ ଦେହ ପଞ୍ଜରେ,
ନିଜେ ଯାଇ ଗୁଇଚଲେ ଉଗ୍ର ହୋଇଲା ହେଲେ।

ନଇବେଦ୍ୟ ଥାଳୀ କରେ ତୋଳ ଛନ୍ଦୁଁ ଯତନେ,
ଶିବାଳୟେ ଗଲେ ନାଶ୍ର ସେବା ଧ୍ୟାନ ପୂଜନେ।
କାହ୍ନୁଡ଼ ଦେଖନ୍ତି, ବୁଢ଼ା ଗୁଇ ଚଳେ ନବସି,
"ଥକା ମନ ଭୁଲ ଯିବା", ଗାଇ ଅଛଇ ହସି।
"ଚକା ନେହ ନରେଖିବା", କଣ୍ଠୁ ସଙ୍କୋଚ ସ୍ୱରେ,
ମିଶାଇ ନାଶ୍ରଟି ଧୀରେ, ଗଲେ ଆପଣା ବାସେ।



# ସାନ୍ଧ୍ୟତାରା

ପ୍ରତୀଚୀ ଭୂଧର ପଛେ ଲୁଚିଲେ ତପନ,
ସୁନ୍ଦର ପାଟଳେ ଶୋଭେ ବାରୁଣୀ ଗଗନ;
ତେବେ ତା ଶାନ୍ତ କପୋଳେ,
ତୁହି, ସାନ୍ଧ୍ୟତାରା, ଏକା ତାରକା ସଂସାରେ ।

ରବି ବୁଡ଼ିଗଲେ, ମର୍ତ୍ତ୍ୟେ ଘୋଟଇ ଅନ୍ଧାର;
ବୁଝାଉ ତୁ ଢାଳି ଜ୍ୟୋତି ଦୁଃଖ ଦୈନ୍ୟ ତାର;
ତୁହି ଅନ୍ତିମ ଭରସା,
ତୋ ବିନା ଏ ବିଶ୍ୱବାସୀ ଲଭନ୍ତା କି ଦଶା ?

ଯାପାପ୍ରିତ ନୁହେଁ ଖାଲି ଆକାଶ ତଳପ,
ନିରାଶ ହୃଦୟେ ଆଶା ଜଗାଉ କଳପ,
ରଜ୍ ନିଶା ଦେଖା ଗଲେ,
ସୀମନ୍ତିନୀ ଶୁଭ୍ର ଟୀକା ସର କି ସମ୍ମାରେ !

ପ୍ରକୃତି ଉଦ୍ୟାନେ ତୁ କି କମଳ କଳିକା ?
ଅବା କେଉଁ ଦେବତାର ନୟନ ଚନ୍ଦ୍ରିକା ?
କେଉଁ ସୁରନାଗ ମଣି ?
ଅବା କାହା ନେତ୍ର ତ୍ୟକ୍ତ ଅଶ୍ରୁ ବାରି କଣି ?

ଅବା ଦିବା ସୃଷ୍ଟି ଶୁଭ ଲଗ୍ନ ବେଳା ପାଶେ,
ତୁ ଏକ ଦିଵ୍ୟ ଖଗ ଜନ୍ମିଲୁ ଆକାଶେ ?
        କିବା ସୁରସୁର ଗଣ
    ସମୁଦ୍ର ମନ୍ଥନ୍ ଚୋଟେ ପାଇଛନ୍ତି ଧନ ?

ଯାହା ତୁ ଦେଇଛ, ରେ ସାନ୍ଧ୍ୟତାରା, ସଦା ପ୍ରୀତି;
ତୁ ତ ମୋର ଏକମାତ୍ର ପରଣ ସମ୍ପତ୍ତି;
        ମୋର ନୀରସ ଜୀବନେ
ତୁ ଏକା ସଞ୍ଚାରୁ ରସ 'କଣିକା ଯତନେ ।

ଜୀବନ୍ ଲଭିବ ଯେବେ ମୋ ସୁଖ ଆଲୋକ,
ବ୍ୟଥିତ୍‌ରେ ଚୂର୍ଣ୍ଣିବ ଶୂନ୍ୟେ ବକ୍ଷ ହେବେ ଶୋକ
        ତେବେ ଆୟୁ ଶେଷ କ୍ଷଣେ
ତୁହି, ସାନ୍ଧ୍ୟ ତାରା, ଜଇଁ ପ୍ଲାବକୁ କରଣେ ।




ମୁଦ୍ରାକର—ଶ୍ରୀ ଦିବାକର ମିଶ୍ର, ଗୋସ୍ୱାମୀ ପ୍ରେସ, କଟକ—୨

